# ଅଲଂକାର
# ଓ
# ଅଲଂକାର ତତ୍ତ୍ୱ

**ଶ୍ରୀ କ୍ଷେତ୍ରବାସୀ ନାୟକ**
ଅଧ୍ୟାପକ, ରାଜେନ୍ଦ୍ର କଲେଜ, ବଲାଂଗୀର

**ଶ୍ରୀମତୀ ଲାବଣ୍ୟ ନାୟକ**
ଅଧ୍ୟାପିକା, ମହିଳା କଲେଜ; ବଲାଂଗୀର

# ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ

ଲେଖକ
ଶ୍ରୀ କ୍ଷେତ୍ରବାସୀ ନାୟକ
ଅଧ୍ୟାପକ ଓଡ଼ିଆ ବିଭାଗ
ରାଜେନ୍ଦ୍ର କଲେଜ
ବଲାଙ୍ଗୀର

ଶ୍ରୀମତୀ ଲାବଣ୍ୟ ନାୟକ
ଅଧ୍ୟାପିକା ଓଡ଼ିଆ ବିଭାଗ
ମହିଳା କଲେଜ
ବଲାଙ୍ଗୀର

ପ୍ରଚ୍ଛଦ
ଶ୍ରୀ ଶ୍ରୀକାନ୍ତ ଉଦ୍‌ଗାତା
କଳକୁଟୀର
ବଲାଙ୍ଗୀର

ଆଦ୍ୟ ପ୍ରକାଶ
ବିଷୁବ ସଂକ୍ରାନ୍ତି - ୧୯୭୮

ମୁଦ୍ରକ ଓ ପ୍ରକାଶକ
ଶ୍ରୀ ବିଶ୍ୱନାଥ ଆଚାର୍ଯ୍ୟ
ଭାରତୀ ଟ୍ରେଡ଼ିଂ କମ୍ପାନୀ
ଟିଟିଲଗଡ଼
ବଲାଙ୍ଗୀର

ମୂଲ୍ୟ — ଟଙ୍କା ୬୦

## ଉତ୍ସର୍ଗ............

ପରମାରାଧ୍ୟ
ସ୍ୱର୍ଗତ ରାଧାଗୋବିନ୍ଦ ଦାସ, ବ: ଏ: ଏଲ: ଟି
ଓ
ଶ୍ରୀମତୀ କ୍ଷୀରୋଦା କୁମାରୀ ଦେଈ
କରକମଳେଷୁ
........................

ସଂସ୍କୃତମୂଳୀ ହୋଇ ପଡ଼ନ୍ତି । ତାଙ୍କୁ ବୁଝିବାରେ କିଛି ଅନୁଭୂତ ହୋଇଛି ବିଶେଷତଃ ଛାତ୍ରମାନଙ୍କ ପକ୍ଷରେ ।

ଅନେକଙ୍କର ଏଇ ଅସୁବିଧାର ସନ୍ଧାନ [illegible]ଛନ୍ତି । ତେଣୁ ଏଇ ଅବସର ପ୍ରାପ୍ତି ପରେ ଆମ [illegible] ଅଳଙ୍କାର ଗ୍ରନ୍ଥଟିଏ ପ୍ରଣୟନ କରିବାର ଅଭିଳାଷ ଥିଲ [illegible] ଭିତରରୁ ଜୀବନ ଯୁଦ୍ଧ ସମସ୍ତ ଅଭାବରୁ ଶୀଘ୍ର କାର୍ଯ୍ୟକାରୀ ହୋଇ ପାରିଲ ନାହିଁ । ଗ୍ରନ୍ଥ-ଗୁରୀଙ୍କର ଅନୁରୋଧ ଓ ଅଧ୍ୟାପକ ବନ୍ଧୁମାନଙ୍କର ପ୍ରେରଣା କଙ୍କାଳକୁ ଜୀବନ୍ୟାସ ଦେବାରେ ସାହାଯ୍ୟ କଲା । ଲେଖୁ ଲେଖୁ ଯୋଜନା ବଢ଼ିଗଲା— କେବେ ନକମିଥ ନୂଆ ଅଧ୍ୟାୟଟି ସଂଯୋଜିତ କରିବାକୁ ଅଧ୍ୟାପକ ବନ୍ଧୁମାନେ ବି ପରାମର୍ଶ ଦାଅନ୍ତି । ବିଶେଷତଃ ଗଙ୍ଗାଧର ମେହେର କଲେଜର ଓଡ଼ିଆ ବିଭାଗର ଅଧ୍ୟାପକ ବନ୍ଧୁ ଶ୍ରୀ ଦୁର୍ଗାପ୍ରସନ୍ନ ପଣ୍ଡା ସମୟ ଦେଇ ଅଳଙ୍କାରର କେତେକ ବ୍ୟାଖ୍ୟା ଶୁଣିଛନ୍ତି ଏବଂ ଆବଶ୍ୟକତା ଦେଖି ପରାମର୍ଶ ବି ଦେଇଛନ୍ତି । ଯାହାକି ଏହି ଗ୍ରନ୍ଥକୁ ସଂକଳିତ କରିବାରେ ସାହାଯ୍ୟ କରିଛି ।

ସମ୍ବଲପୁରରୁ ସ୍ଥାନାନ୍ତରିତ ହୋଇ ବଲାଙ୍ଗୀର ଆସିଲା ପରେ ଏଠି ଆମର ଶ୍ରଦ୍ଧେୟ ଗୁରୁ ଶ୍ରୀମାନ ନନ୍ଦକୁମାର ଅଗ୍ରୱାଲ, ଭାଇ ବନ୍ଧୁ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ଓ ଇଂରେଜୀ ଅଧ୍ୟାପକ ବନ୍ଧୁ ଶ୍ରୀ ରାଜକିଶୋର ମିଶ୍ର ଏବଂ ଆମର ପୂଜନୀୟ ଅଧ୍ୟାପକ ଶ୍ରୀ ଚନ୍ଦ୍ରମଣି ବେହେରା ଏହାର ଆଶୁ ପ୍ରକାଶନ ପାଇଁ ଆମକୁ ବାରମ୍ବାର ଉତ୍ସାହିତ କରିଛନ୍ତି । ଚିରନ୍ତିବନ୍ଧୁ ଶ୍ରୀ ଶ୍ରୀକାନ୍ତ ଉଦ୍‌ଗାତା ଏହାର ପ୍ରୁଫଦେଖି ଅଙ୍କନ ଭାବ ପ୍ରକାଶନକୁ ତ୍ରୁଟିପୂର୍ଣ୍ଣ କରିବାରେ ସାହାଯ୍ୟ କରିଛନ୍ତି ଏମାନଙ୍କ ଅକୁଣ୍ଠ ସାହାଯ୍ୟ ଓ ସାଗ୍ରହ

# ବିଷୟ ସୂଚୀ

ବିଷୟ | ପୃଷ୍ଠାସଙ୍କେତ

# କାବ୍ୟ ତତ୍ତ୍ୱ

## କାବ୍ୟ : ସଂଜ୍ଞା ଓ ସ୍ୱରୂପ :—

କାବ୍ୟ, କବି ଚିତ୍ତର ବାଙ୍ମୟ ଅଭିବ୍ୟକ୍ତି । ମାନବ ଜୀବନ ଓ ବିଶ୍ୱ ପ୍ରକୃତି ସହ କାବ୍ୟର ସମ୍ବନ୍ଧ ଅତି ନିବିଡ଼ । ତେଣୁ ବୋଧ ହୁଏ କାବ୍ୟକୁ ଅନେକେ ମାନବ ଜୀବନ ଓ ସୃଷ୍ଟି ସୌନ୍ଦର୍ଯ୍ୟର ରସଦ ସମୀକ୍ଷା ରୂପେ ଅଭିହିତ କରିଥାନ୍ତି । କାରଣ ବିରାଟ ବିଶ୍ୱର ବିପୁଳ ଅଭିଜ୍ଞାନପୁଞ୍ଜରୁ କବି ଯେଉଁ ଅନୁଭୂତିର ସାର ସଂଗ୍ରହ କରେ, ସୃଷ୍ଟିର ପ୍ରତିଚ୍ଛାୟାରୁ ଯେଉଁ ପ୍ରେରଣା ଲାଭକରେ, ଜୀବନର ଅନୁଶୀଳନରୁ ଯେଉଁ ପ୍ରଜ୍ଞାର ଉଦ୍ଭବ ହୁଏ ତାହାକୁ ଏକ ବାଣୀ-ମୟ ରୂପ ପ୍ରଦାନ କରେ । ତାହାହିଁ ହୁଏ କାବ୍ୟ ବା ସାହିତ୍ୟ । ଜୀବନ ଯେପରି ଆଦିମ, ସାହିତ୍ୟ ସେହିପରି ଆଦିମ । ସୃଷ୍ଟିର ପ୍ରଥମ ପ୍ରଭାତରେ, ଜୀବନର ଆଦ୍ୟ ଓଁକାରରେ, ସାହିତ୍ୟର ଉନ୍ମେଷ । ସାହିତ୍ୟ ଏକ ବ୍ୟାପକ ପ୍ରୟୋଗ, କାବ୍ୟ ତାହାର ଅଙ୍ଗ । କେବଳ କାବ୍ୟ କାହିଁକି, ସୃଷ୍ଟିର ଅନେକ ବସ୍ତୁ ସାହିତ୍ୟର ଅଙ୍ଗୀଭୂତ । ପୂର୍ବାଚାର୍ଯ୍ୟମାନଙ୍କ ମତରୁ ମନେହୁଏ, ସୃଷ୍ଟିରେ ଏପରି କୌଣସି ଶବ୍ଦ ନାହିଁ, ଏପରି କୌଣସି ଅର୍ଥ ନାହିଁ, ବିଦ୍ୟା ନାହିଁ, କଳା ନାହିଁ, ଯାହାକି କୌଣସି ପ୍ରକାରରେ

ଏହ ଭାବାତ୍ମକ ସାହିତ୍ୟର ଅଙ୍ଗ ନୁହେଁ । (୧) ସଭ୍ୟତା ସହ କାବ୍ୟ ଓ ସାହିତ୍ୟର ଉତ୍ପତ୍ତି । ବେଦ ଆମର ପ୍ରାଚୀନ ସାହିତ୍ୟ । ସେଥିରେ ବି ତାହାର ଆଭାସ ମଧ୍ୟ ମିଳିଥାଏ । ଋକ୍ ବେଦର ଉଷା-ସୂକ୍ତରେ କାବ୍ୟର ପରିପୂର୍ତ୍ତି ।

ତେବେ ଯାହା ହେଉନା କାହିଁକି, କାବ୍ୟର ସୃଷ୍ଟି, ପରିଣତି ଓ ପ୍ରବୃତ୍ତି ସମ୍ବନ୍ଧରେ ନାନା ମୁନିଙ୍କର ନାନା ମତ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତାନୁସାରେ କାବ୍ୟ ସଂଜ୍ଞାର ବିଭିନ୍ନତା ପରିଲକ୍ଷିତ ହୁଏ । କେହି କେହି କାବ୍ୟ ଲକ୍ଷଣର ସମୀକ୍ଷା କରିବାକୁ ଯାଇ ତାର ସୃଷ୍ଟି ମୂଳରେ କବିର ଚିତ୍ତ ବୃତ୍ତିର ସ୍ଥିତି ନିର୍ଣ୍ଣୟ କରିଥାନ୍ତି । କେହି ଭାବ, କେହି କଳ୍ପନା, କେହି ରଚନା ଶୈଳୀ ବା ରୀତି, କେହି ପ୍ରକାଶନ ଶକ୍ତି, କେହି ଅନ୍ତର୍ଦୃଷ୍ଟି ଆଦିକୁ ଆଧାର କରି କାବ୍ୟର ଉତ୍ପତ୍ତି ବୋଲି ମତବ୍ୟକ୍ତ କରିଥାନ୍ତି । କେତେକ ପୁଣି କାବ୍ୟକୁ ଆନନ୍ଦମୂଳକ, କେହି କଳାତ୍ମକ, କେହି ଭାବାତ୍ମକ, କେହି ଅନୁଭୂତି ମୂଳକ, କେହି ଆତ୍ମବୃତ୍ତି ମୂଳକ, କେହି ଜୀବନ ଜିଜ୍ଞାସା ମୂଳକ, କେହି ପୁଣି ଏହାକୁ ହୃଦୟାବେଗ ମୂଳକ ସ୍ଫୁରଣ ବୋଲି କହିଥାନ୍ତି । ତେବେ କାବ୍ୟ ସମ୍ବନ୍ଧୀ ଏହି ବିଭିନ୍ନ ତତ୍ତ୍ୱରୁ ସ୍ପଷ୍ଟ ଜଣାପଡ଼େ ଯେ, କାବ୍ୟ ଲକ୍ଷଣକାରମାନେ ସେମାନଙ୍କର ମତ ଅନୁକୂଳ ଲକ୍ଷଣକୁ ପ୍ରାଧାନ୍ୟ ଦେଇ କାବ୍ୟର ସଂଜ୍ଞା ନିରୂପଣ କରିଛନ୍ତି । କିନ୍ତୁ କାବ୍ୟ ବା କବିତାର ଉପାଦେୟକୁ ବିଶ୍ଳେଷଣ କଲେ ମୁଖ୍ୟତଃ ଦୁଇଟି ପକ୍ଷର ସୂଚନା ମିଳେ ।

---

(୧) ନ ସ ଶବ୍ଦୋ ନ ତଦ୍ବାଚ୍ୟଂ ନ ତଚ୍ଛାସ୍ତ୍ରଂ ନ ସା କଳା ।
ଜାୟତେ ଯନ୍ନ କାବ୍ୟାଙ୍ଗ-ମହୋ ଭାରୋ ମହାନ୍ କବେଃ ।
(ଭାମହ)

(୧) ଭାବପକ୍ଷ (୨) କଳାପକ୍ଷ । ଏହି ଦୁଇଟିଙ୍କର ଭିନ୍ନଭିନ୍ନ ପକ୍ଷ ସମର୍ଥନରେ କାବ୍ୟର ସଂଜ୍ଞା ନିରୂପିତ । ପ୍ରାଚୀନ ଆଳଙ୍କାରିକ ମାନଙ୍କ ମଧ୍ୟରୁ କେହି ପ୍ରଥମ କଳା ପକ୍ଷର ସମର୍ଥକ, କେହି ବା ଭାବ ପକ୍ଷର । ଯେପରିକି " କାବ୍ୟସ୍ୟାତ୍ମା ଧ୍ୱନିଃ " ର ଉଦ୍‌ଘୋଷକ ପଦାର୍ଥିକ ଭାବବାଦୀ । ପୁଣି "ରୀତିରାତ୍ମା କାବ୍ୟସ୍ୟ" ର ପ୍ରବକ୍ତା ବୋଧହୁଏ କଳାବାଦୀ ।

କିନ୍ତୁ ଆଧୁନିକ ଦୃଷ୍ଟି କୋଣରୁ ବିଚାର କଲେ ମନେହୁଏ ଯେ, ଉଭୟ ପକ୍ଷର ସମ୍ମିଳନରେ କାବ୍ୟର ସ୍ୱରୂପ ଓ ସୃଷ୍ଟି । କାବ୍ୟ ତା କରିବାର ଅନୁଚେତନାରେ ବ୍ୟକ୍ତି (Individual spirit) ବୁଦ୍ଧି (Intellect), ବିଶ୍ୱ (Universe), ବିମ୍ବ (Image), ବ୍ୟଙ୍ଗ (Satire or style) ଆଦିର ରୂପ ପ୍ରକଟନ । ଅନ୍ୟ ଦୃଷ୍ଟିରୁ ବିଚାର କଲେ ବେଶ୍ ମନେହୁଏ ଯେ, ଭାବ, ବୁଦ୍ଧି, କଳ୍ପନା ଓ ଆଙ୍ଗିକାଦିର ସମନ୍ୱୟରେ କାବ୍ୟର ସ୍ୱରୂପ ପ୍ରକାଶିତ । ତେବେ କାବ୍ୟର ସୃଷ୍ଟି ତତ୍ତ୍ୱ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ସମାନ ଥିଲେ ସୁଦ୍ଧା ତାହାର ନିରୂପଣରେ ଭିନ୍ନତା ପରିଲକ୍ଷିତ ହୁଏ ।

## ପ୍ରାଚ୍ୟ ଆଳଙ୍କାରିକଙ୍କ ନିର୍ଦ୍ଧାରଣ :—

ବାକ୍ୟଂ ରସାତ୍ମକଂ କାବ୍ୟଂ (୧) ସାହିତ୍ୟ ଦର୍ପଣରେ ଆଲୋଚିତ । ଏହାର ସାମାନ୍ୟ ବିକଳ୍ପ ଗଣନ୍ତୁ ମନେହୁଏ, ପଣ୍ଡିତ ବିଶ୍ୱନାଥ କବିରାଜ ରସମୟ ବାକ୍ୟକୁ କାବ୍ୟର ଆତ୍ମାରୂପେ ପରି-କଳ୍ପନା କରିଛନ୍ତି । ସେଠି ଶବ୍ଦର ସୌଷ୍ଠବ ନାହିଁ, ବାଣୀ ଭଙ୍ଗୀର ଜଟିଳ ପ୍ରୟୋଗ ନାହିଁ । ଅଛି ରସ ପରିପ୍ଲୁତର ସନ୍ଦେଶ । କାରଣ ଶବ୍ଦ ସୌଷ୍ଠବ କର୍ଣ୍ଣରୋଚକ ହୋଇପାରେ, ମର୍ମ ରୋଚକ ନୁହେଁ । ଶବ୍ଦର ଲାଳିତ୍ୟ ଶ୍ରୁତିମଧୁର ଝଙ୍କାର ସୃଷ୍ଟି କରିପାରେ, କିନ୍ତୁ

ହୃଦ ମନ୍ଦିରରେ ଆନନ୍ଦର କଲ୍ଲୋଳ ସୃଷ୍ଟି କରି ପାରେନା । ଏଣେ କରୁ ଅଲୌକିକ ଆନନ୍ଦ ସଞ୍ଚାରହିଁ କାବ୍ୟର ଶ୍ରେଷ୍ଠରୂପେ ସର୍ବ ସ୍ୱୀକୃତ । ଏହି ଆନନ୍ଦ ବାହ୍ୟରୂପର ବର୍ଣ୍ଣାଢ଼୍ୟ ପ୍ରକାଶରୁ ଲବ୍ଧ ନୁହେଁ । କିମ୍ବା ଅଳଙ୍କାରିକ ପଦ ବିନ୍ୟାସରେ ପରିପୁଷ୍ଟ ନୁହେଁ । ବରଂ ରସର ସଂଘଟଣରେ କାବ୍ୟର ସୌନ୍ଦର୍ଯ୍ୟ ନିହିତ । ରସ କାବ୍ୟର ଆତ୍ମା, ଶବ୍ଦାର୍ଥ ଶରୀର; ଶୌର୍ଯ୍ୟାଦି ଗୁଣ । ରୀତି, କାବ୍ୟର ବେଶକରଣ ବା ଭୂଷଣ । ରସର ଚର୍ବଣଦ୍ୱାରା ଆତ୍ମାର ବିବେଚନା କଲେ, ହୃଦୟର ସୁପ୍ତ ଭାବନା ଜାଗରିତ ହୁଏ । ଆନନ୍ଦ ରସ ଉତ୍ସାରିତ ହୁଏ । ଏହି ଆନନ୍ଦ ଅନ୍ୟ କିଛି ନୁହେଁ, କାବ୍ୟର ରସ ମାତ୍ର । କାବ୍ୟର ଉଦ୍ଦେଶ୍ୟ ଆନନ୍ଦ ଉଦ୍ରେକ, ରସର ନିଃସରଣ । ତେଣୁ ହୁଏତ ରସାତ୍ମକ ପଦ ବିନ୍ୟାସ କାବ୍ୟ ହୋଇପାରେ ।

ଅନ୍ୟତ୍ର "ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଂ କାବ୍ୟଂ" ବୋଲି ପଣ୍ଡିତ ରାଜ ଜଗନ୍ନାଥଙ୍କ ଅଭିମତ । ଅର୍ଥାତ୍ ଯେଉଁ ଶବ୍ଦର ଅର୍ଥରୁ ରମଣୀୟତା ବା ସଂବେଦନତା ଏବଂ ଅଲୌକିକ ଚମତ୍କାର ଅନୁଭୂତ ପ୍ରକାଶ ପାଏ, ତାହାହିଁ ହୁଏ କାବ୍ୟ । ଏଠାରେ ସେପରି ଶବ୍ଦର ଚମତ୍କାରିତା କାବ୍ୟକୁ ସ୍ୱରୂପ ଦାନ କରେ ବୋଲି କଥିତ ଅନ୍ୟତ୍ର "ସମ୍ମିଳିତ ଅର୍ଥ ଓ ଶବ୍ଦ, କାବ୍ୟ" ବୋଲି ସୂତ୍ର କରାଯାଏ । ପରୀକ୍ଷା କଲେ ମନେହୁଏ ବାହ୍ୟଶବ୍ଦ ଓ ଅନ୍ତର ଅର୍ଥର ମିଳନ ଫଳରେ କାବ୍ୟର ସୃଷ୍ଟି ସମ୍ଭବ ହୁଏ । ପ୍ରାଚ୍ୟ ମତରେ ପ୍ରତିଷ୍ଠିତ କାବ୍ୟର ସଂଜ୍ଞା ଓ ସ୍ୱରୂପ କେତେକ କ୍ଷେତ୍ରରେ ପାଶ୍ଚାତ୍ୟ ସାରସ୍ୱତ ପଣ୍ଡିତମାନଙ୍କ ମତସହ ସାମ୍ୟରକ୍ଷା କରିଥିବା ମନେ ହୁଏ ।

---

(୧) ସାହିତ୍ୟ ଦର୍ପଣ, ପଣ୍ଡିତ ବିଶ୍ୱନାଥ ।

## ପାଶ୍ଚାତ୍ୟ ଦୃଷ୍ଟିରେ :—

ପାଶ୍ଚାତ୍ୟ ଦୃଷ୍ଟି କୋଣରେ କାବ୍ୟ ଏକ ଆବେଗ ସଞ୍ଚାରୀ କଳା । କବି ଚିତ୍ତର ଆତ୍ମ ପ୍ରକାଶ । କିନ୍ତୁ ଏଇ ଭାବନା ଓ ଦର୍ଶନ ବ୍ୟକ୍ତିଗତ ହେଲେ ବି, ସାର୍ବଜନୀନ । କବି ସୌନ୍ଦର୍ଯ୍ୟ-ଧ୍ୟାନର ଚିନ୍ତା ପ୍ରକାଶିତ ହେଲା ପରେ ପରେ ତାହା ସୃଷ୍ଟି ଅସଂଖ୍ୟ ହୃଦୟଙ୍କୁ ସ୍ପର୍ଶ କରେ । ମଥିତ କରେ । ସେ ହୁଏ ନୈର୍ବ୍ୟକ୍ତିକ । କବି ନିଜ ଭିତରେ ଲୁଚି ନ ରହି ସହୃଦୟଙ୍କ ଅନ୍ତରରେ ପ୍ରବେଶ କରେ । ଏଠି ସହୃଦୟତା ବା ଉଦାତ୍ତ ବୋଧର ବାତାବରଣ ସୃଷ୍ଟି ହୁଏ । କାବ୍ୟ; କବି ଚିନ୍ତାର ପରିବେଷଣ ଓ ସଞ୍ଚାରଣ କ୍ଷମ (Communication of Ideas) କଳାସୃଷ୍ଟି ।

କାବ୍ୟ ବା କବିତା ବଳିଷ୍ଠ ଭାବାନୁଭୂତିର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି (୧) । ଏହି ଅନୁଭୂତି ନିର୍ଦ୍ଦିଷ୍ଟ ରୂପେ ଆସ୍ୱାଦ୍ୟ । କବି ସ୍ରଷ୍ଟରୂପୀ । ତେଣୁ ଆନନ୍ଦ ସଞ୍ଚାରୀ ଓ ଆବେଗ ତଥା ସଂବେଦନ ବାହୀ । ପାଶ୍ଚାତ୍ୟ କବି ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କର ଏହି ମତ ଆମର ରସବାଦୀ ଆଳଙ୍କାରିକଙ୍କ ମତ ସହ ସମାନ । କିମ୍ବା କଲରିଜଙ୍କ ମତରେ କାବ୍ୟ, ଉତ୍କୃଷ୍ଟ ଶବ୍ଦାବଳୀର ଶ୍ରେଷ୍ଠ ପ୍ରୟୋଗ" (୨) ରୂପେ ପ୍ରତିପାଦିତ । ଏହା ସଂସ୍କୃତାଂଶରେ 'ରୀତିରାତ୍ମା କାବ୍ୟସ୍ୟ' ର ସଂଜ୍ଞାସହ ସମାନ । ପୁଣି ସେଲିଙ୍କ ଦୃଷ୍ଟିରେ "ଏକ

---

(୧) The spontaneous overflow of powerful feelings. (Wordsworth.)

(୨) The best words in the best order. (Coleridge)

ନିଶ୍ଚିନ୍ତ ଓ ଆନନ୍ଦ ବେଳାରେ ଉତ୍କୃଷ୍ଟ ଅନ୍ତଃକରଣମାନଙ୍କ ଅଭି-ବ୍ୟକ୍ତି ହିଁ କାବ୍ୟ" (୩) । ବାସ୍ତବିକ ଭାବନା ସହିତ କାବ୍ୟର ସଂପୃକ୍ତି ନିହାତି ଅଭିନ୍ନ ଓ ଅଚ୍ଛେଦ୍ୟ ।

କାବ୍ୟ ସ୍ଫୂର୍ତ୍ତାଶ୍ରୟୀ । ମନ ଗ୍ରହଣଶୀଳ ଓ ପ୍ରଭାବପ୍ରିୟ । ଯୁଗର ଧର୍ମ ଓ କାଳର ଚଳା କବିର ମାନସ ଜଗତକୁ ବିଶେଷ ପ୍ରଭାବିତ କରେ । ତେଣୁ କାବ୍ୟ ବା କବିତା ନେଇ ରୂପହିଁ ଗ୍ରହଣ କରିଥାଏ । ସମାଲୋଚକ ଅଲଫ୍ରେଡ୍ ନୟେଲ କହନ୍ତି; "କୌଣସି ଯୁଗର ଉଚ୍ଚ ଦର୍ଶନ ଓ ପ୍ରଭାବଶାଳୀ ଭାବାବେଗର ଗଭୀରତମ ଅଭିବ୍ୟକ୍ତି ହିଁ କାବ୍ୟ (୪) । ବାସ୍ତବିକ କାବ୍ୟ, କବିତା ବା ସାହିତ୍ୟ, ଯୁଗ ବା କାଳର କେନ୍ଦ୍ର ଉପରେ ପ୍ରତିଷ୍ଠିତ । ଯୁଗର ଜୀବନ, ଲୋକସମାଜ ଓ ବିଶ୍ୱର ବାର୍ତ୍ତା କାବ୍ୟର କଳେବରରେ ସାଧାରଣତଃ ରୂପାୟିତ । କାବ୍ୟ ବା କବିତା ମାନବ ଜୀବନର ସମୀକ୍ଷଣ । ସୃଷ୍ଟି ଓ ସୌନ୍ଦର୍ଯ୍ୟର କଳା କୁଶଳ ରୂପାୟନ । କାବ୍ୟର ଜଗତ; ବହିର୍ଜଗତର ଏକ ରୂପାନ୍ତର, ମାତ୍ର ଲୋକ ଜୀବନର ଏକ ସ୍ୱାଭାବିକ ଅଧ୍ୟୟନ । କାବ୍ୟରେ କବି ; ବହିର୍ଜଗତ ଓ କାବ୍ୟ ଜଗତର ଏକ ସଂଯୋଜକ ବ୍ୟକ୍ତି । ସେ ବୃହତ୍ତର ବିଶ୍ୱର ପର୍ଯ୍ୟ-ବେକ୍ଷକ ପୁଣି ନୂତନ ସୃଷ୍ଟିର ସ୍ରଷ୍ଟା ।

---

(୩) The best and happiest moments of the best and happiest minds. (Shelly)

(୪) Poetry is the most intense expression of the dominant emotions and the high ideas of the age.

## କବି ଓ କାବ୍ୟ:—

କବି ସ୍ରଷ୍ଟା, କାବ୍ୟ ତାର ସୃଷ୍ଟି । କବିତା ତାର ମାନସ ସନ୍ତାନ । ସୁତରାଂ କବି ଓ କାବ୍ୟର ସମ୍ପର୍କ ଆତ୍ମା ଓ ପୁରୁଷର ସମ୍ପର୍କ ସହ ସମାନ । ଆତ୍ମାର ଅନୁପସ୍ଥିତିରେ ପୁରୁଷ ନିର୍ଜୀବ । କବିତାର ମୃତ୍ୟୁରେ କବିର ମୃତ୍ୟୁ । କବିତା, କବିର ଅପୂର୍ବ ବସ୍ତୁ ନିର୍ମାଣ କ୍ଷମ ପ୍ରଜ୍ଞାର ପ୍ରକାଶିତ । କବି ଅସାଧାରଣ । ସେ ସୃଷ୍ଟି ଦ୍ୱିତୀୟ ସ୍ରଷ୍ଟା । ତେଣୁ ବହୁ ଆଲଙ୍କାରିକଙ୍କ ମତରେ 'ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ ।" ସୁତରାଂ ବ୍ରହ୍ମା ଯେପରି ଜଗତର ସ୍ରଷ୍ଟା, କବି ସେହିପରି ଏକ ଅଭିନବ ଜୀବନ ଓ ଜଗତର ଦ୍ୱିତୀୟ ସ୍ରଷ୍ଟା । କବିର ଜଗତ ବହୁବର୍ଣ୍ଣ ବିମଣ୍ଡିତ । କବି ସୃଷ୍ଟିର ଦିଗନ୍ତ ବ୍ୟାପକ । କାବ୍ୟ ସଂସାରରୁ ପ୍ରକୃତିର ବୃହତ୍ । କବି ଚିତ୍ତର ନବ ନବ ଉନ୍ମେଷଶାଳିନୀ ପ୍ରତିଭାର ଆଲୋକ ଯେଉଁ ଅଞ୍ଚଳକୁ ସ୍ପର୍ଶ କରେ, ଯେଉଁ ବସ୍ତୁର ସ୍ୱାଦୁ ଆଘ୍ରାଣ କରେ, ଯେଉଁ ଭାବର ଜ୍ୟୋତ୍ସ୍ନା ଅନୁଭବ କରେ, କିମ୍ବା ଯେଉଁ ସ୍ୱପ୍ନର ସମ୍ଭାରରେ ନିଜ ଚିତ୍ତକୁ ସମ୍ମୋହିତ କରେ ତାର ଏକ ବାଙ୍ମୟ-ମୂର୍ତ୍ତି ସମ୍ଭବ ହୁଏ କବିତାର ଭାବ ତରଙ୍ଗରେ ।

କବି କେବଳ ସ୍ରଷ୍ଟା ନୁହେଁ ଶିକ୍ଷକ । ବସ୍ତୁର ସୌନ୍ଦର୍ଯ୍ୟ ପ୍ରତି କବିର ଦୃଷ୍ଟି ; ସତ୍ୟର ଆଦର୍ଶମୟୀ ଦିଗ ପ୍ରତି କବିର ସ୍ୱାଭାବିକ ଆକର୍ଷଣ, ସୃଷ୍ଟିର ଔଚିତ୍ୟବୋଧ ସ୍ଥାପନାପ୍ରତି କବିର ଅଭିଳାଷ, ମାନବିକ ଜୀବନର ଦୋଷ ଓ ଚରିତ୍ରର ସଂଶୋଧନ ପାଇଁ କବିର ଭୂମିକା; ବାସ୍ତବିକ ତାଙ୍କୁ ଏକ ଶିକ୍ଷକର ଆସନରେ ଆସୀନ କରେ । ସେ ସମାଜ, ସଭ୍ୟତା ଓ ସଂସ୍କୃତିର ଶିକ୍ଷକ ରୂପେ, ବର୍ତ୍ତିରହେ । ତେଣୁ ଉଦାତ୍ତ ସ୍ୱାର୍ଥ କହନ୍ତି ;

"The poet is a teacher; I wish to be considered as a teacher or as nothing.

କବିର କବିତା ମନର ଅଭିବ୍ୟକ୍ତି ସତ କିନ୍ତୁ ଆତ୍ମା ସର୍ବସ୍ୱ ନୁହେଁ । ଏହି ଚେତନାର ଶକ୍ତିପୂର୍ଣ ରୂପ କବିତାର ପ୍ରାଣ କେନ୍ଦ୍ରରେ ପ୍ରତିଫଳିତ । କିନ୍ତୁ ତାହା ବ୍ୟକ୍ତି ସର୍ବସ୍ୱ ନୁହେଁ । ବରଂ ନିର୍ବ୍ୟକ୍ତିକ । ତେଣୁ ସାର୍ବଜନୀନ । କାରଣ କବି ଜଗତରୁ ଯାହା ଅନୁଭବ କରେ, ସେ ଅନୁଭୂତିରେ କୋଟି କୋଟି ଜୀବନର ଆବେଗ ଭରି ରହିଥାଏ । କୋଟି କୋଟି ଜୀବନର ସତ୍ୟତାକୁ ଅନ୍ତରେ ଅନ୍ତରେ ଅନୁଭବ କରି, ଗୋଟିଏ ଛନ୍ଦରେ, ଗୋଟିଏ ସ୍ପନ୍ଦନରେ ତାକୁ ଜୀବନ୍ୟାସ ଦିଏ । ସେ ହୁଏ ସମସ୍ତଙ୍କର ଭାବନା ଓ କାମନାର ପ୍ରତିଧ୍ୱନି । ତେଣୁ କବିର ଆତ୍ମଚେତନା ସାର୍ବଜନୀନ ଚେତନାର ସ୍ୱରୂପ ଧାରଣ କରେ ପ୍ରକାଶର ପର-ବର୍ତ୍ତୀ ପର୍ଯ୍ୟାୟରେ । ଆନ୍ତରିକତାର ଗଭୀରତାରେ ହିଁ କାବ୍ୟ କଳାର ଉତ୍କର୍ଷ ପ୍ରତିପାଦିତ ହୋଇଥାଏ । କବି ଯଦି ଆନ୍ତରିକ, କାବ୍ୟ ତାର କଳାତ୍ମକ । Tolstoy ଭଳି ଅନେକ କହନ୍ତି—

The one great quality which a work of art truly contains is its sincerity.

କବିର ଭାବ୍ୟ ସତ୍ୟ ଓ ଶିବ ଉପରେ ଆଧାରିତ ହେଲେ ତାହା ଯଥାର୍ଥ ହୁଏ । କବିର କବିତା ମିଥ୍ୟା ନୁହେଁ । କବି ସ୍ୱପ୍ନ-ଦ୍ରଷ୍ଟା; କଳ୍ପନା ପ୍ରବଣ । କିନ୍ତୁ ବିବେକହୀନ ନୁହେଁ । ତେଣୁ ସତ୍ୟର ମୂଲ୍ୟ ପାଇଁ କବି କଣ୍ଠର ସ୍ୱର ଉଦାତ୍ତ ହୋଇଉଠେ । ସୁନ୍ଦରର ପ୍ରତିଷ୍ଠାପାଇଁ କବିର ସୃଷ୍ଟି କମନୀୟ ହୁଏ । ଶିବର ଉପାଦାନରେ ତାହା ପୁଣି ରମଣୀୟ ହୁଏ । ସତ୍ୟ, ଶିବ, ସୁନ୍ଦରର ସମନ୍ୱୟରେ କବିତାର ଉତ୍କର୍ଷ ସଂସ୍ଥାପିତ ହୁଏ ।

କବି ଯୁଗ ଚେତନାର ସଜାଗ ବିନ୍ଦୁ । ( Poet is a conscious point of the age ) ଯୁଗର ଧର୍ମ କବିର ଧର୍ମ ହୁଏ । କବିର କବିତା ଯୁଗର ଅନୁଭୂତିକୁ ଗର୍ଭଧାନ କରି ଯୁଗୀୟ-ମାନବ ନିକଟରେ ଏକ ଭାବାତ୍ମକ ସମ୍ବନ୍ଧ ପ୍ରତିଷ୍ଠା କରେ । କାବ୍ୟ, କବିତା ବା କଳା ପ୍ରତ୍ୟେକ, ମାନବ ମାନବ ମଧ୍ୟରେ ଏକ ରସା-ମୋଦୀ ବୌଦ୍ଧିକ ସମ୍ବନ୍ଧ ପ୍ରତିଷ୍ଠାର ଏକମାତ୍ର ଅବଲମ୍ବନ । କାବ୍ୟ ବା ସାହିତ୍ୟ ଅଛି ତ, ଅପରିଚିତ ନିକଟରେ କବିର ଆତ୍ମାକୁ ପରିଚିତ କରାଇ ପାରିଥାଏ । ଏହି ଆତ୍ମ ପରିଚୟ-ବୋଧର ଜାଗରଣ କେବଳ କାବ୍ୟ, କଳା ବା ସାହିତ୍ୟ ପାଖରେ ସମ୍ଭବ ହୁଏ । ତେଣୁ Tolstoy କହନ୍ତି—

"Art is the means of union among men joining them together in the same felling''.

କବି ଓ କବିତାର ସମ୍ପର୍କ ନିବିଡ଼ବଛିଳ । କବି ଅପୂର୍ବ ସାଧକ । ସାଧନାହିଁ ତାର ଏକମାତ୍ର ଅବଲମ୍ବନ । ଏହି ସାଧନାର ଧାରା ଅନ୍ୟ ନାମରେ ସାହିତ୍ୟ ରୂପରେ ପରିକଳ୍ପିତ । କବିତା ବା ସାହିତ୍ୟର ପ୍ରକୃତ ଅଲୌକିକତ୍ୱ । ( Poetry is indeed something devine. shelly. ) କବିର କବିତା ଅନ୍ୟ କୌଣସି ବସ୍ତୁ ନିକଟରେ ତୁଳନୀୟ ନୁହେଁ । ଏପରିକି "ନ ବ୍ରହ୍ମ ବିଦ୍ୟା ନ ଚ ରାଜଲକ୍ଷ୍ମୀଃ ତଥା ଯଥେୟଂ କବିତା କବୀନାମ୍" ।

### କାବ୍ୟ ଓ କଳ୍ପନା :—

ପ୍ରତିମା, ପ୍ରତିମୂର୍ତ୍ତି ଓ ପ୍ରତିବିମ୍ବର ପରିସୃଷ୍ଟି ଯେଉଁ କଳାର ମାଧ୍ୟମରେ ସାଧିତ ହୁଏ, କିମ୍ବା ଯେଉଁ ବୌଦ୍ଧିକ ଚେତନାର ସଂପ୍ରସାରଣରେ କୌଣସି ଏକ ଅନୁଭୂତି ବସ୍ତୁ, ଅଦୃଷ୍ଟ ଦୃଶ୍ୟ,

ଅସମ୍ଭାବିତ ଘଟଣା ପ୍ରକ୍ଷିପ୍ତ ହୁଏ ତାହାକୁ ସାଧାରଣତଃ ସାହିତ୍ୟରେ କଳ୍ପନା ରୂପେ ପରିଚିତ । କଳ୍ପନା ଏକ ମାନସିକ ବୃତ୍ତି । ମନର ସଚେତନରେ, ତନ୍ଦ୍ରାର ସଂସ୍ମାରଣରେ, ମନର ସ୍ୱାପ୍ନ ପିଣ୍ଡରେ ବୋଧହୁଏ ଏକ କଳ୍ପନାର ଜଗତ ସୃଷ୍ଟି ହୁଏ । ସେହି କଳ୍ପନା କୁମାରୀର କାୟା କଳେବରର ଜନା କାବ୍ୟ ବା ସାହିତ୍ୟ ଶ୍ରୀ ସୂକ୍ତ ହୁଏନା । ଏହି ମନର ଏକ ଅତୀନ୍ଦ୍ରିୟ ଶକ୍ତି ବଳରେ କବି ନିଜର ସତ୍ୟରେ ରଙ୍ଗ ବୋଳେ । ବସ୍ତୁର ବାସ୍ତବ ଜଗତ ଭେଦ-କରି ଅଷ୍ଟପ୍ରାନ୍ତର ଜଗତକୁ ପ୍ରବେଶ କରେ । ବାହ୍ୟ ପ୍ରକୃତିର ରୂପାଡମ୍ବର ପ୍ରତି ଅନ୍ତର୍ଦୃଷ୍ଟି ନିକ୍ଷେପ କରେ । ବିଭିନ୍ନ ରୂପରେ ରୂପାୟିତ କରି ତାହା ସୃଷ୍ଟିର ନବୀନତ୍ୱ ସମ୍ପାଦନ କରେ । ଏଥିପାଇଁ କଳ୍ପନାର ଆବଶ୍ୟକତା କାବ୍ୟ ବା ସାହିତ୍ୟରେ ନିହାତି ଗୁରୁତ୍ୱପୂର୍ଣ୍ଣ । କାରଣ, କାବ୍ୟ ବା ସାହିତ୍ୟ ନିଛକ ବାସ୍ତବତାର ଅନୁକରଣ ନୁହେଁ, ସମୀୟ ଅବିକୃତ ଅନୁକୃତି ନୁହେଁ, ବରଂ ତାର ଏକ ରୂପାନ୍ତରିତ ପ୍ରକାଶ, ଏବଂ ରୂପାନ୍ତରିତ ହେବାରେ କଳ୍ପନାର ଶ୍ରେୟ ପ୍ରଚ୍ଛନ୍ନ ।

ସାହିତ୍ୟରେ କଳ୍ପନାର ସ୍ଥାନ ଓ ସ୍ୱରୂପ ବହୁଧା ପରି-କଳ୍ପିତ । ସୃଜନଶୀଳ କଳ୍ପନା କବିକୁ ନିର୍ମାଣମୁଖୀ ପ୍ରବୃତ୍ତିପ୍ରତି ଆକୃଷ୍ଟ କରେ । ନୂତନ ସୃଷ୍ଟି ପ୍ରତି କବି ଆଗ୍ରହୀ ହୋଇଉଠେ । ପଶ୍ଚାତ ଭୂମିକାରେ ଅବତୀର୍ଣ୍ଣ ହୋଇ କବି କଳ୍ପନାର ସାହଚର୍ଯ୍ୟ ଲୋଡେ । "ଅପୂର୍ବ ବସ୍ତୁ ନିର୍ମାଣ କ୍ଷମ ପ୍ରଜ୍ଞା" ବୋଧହୁଏ ସେଇ ସୃଜନଶୀଳ ପ୍ରତିଭାର ଉଦ୍ରେକ ପାଇଁ ଉପାଦାନ ଯୋଗାଇଥାଏ । କବିର କାବ୍ୟଜଗତ ପାଇଁ କିମ୍ବା କଳାକୁଶଳତାର ମାନ ନିର୍ଣ୍ଣୟପାଇଁ କଳ୍ପନାହିଁ ଏକମାତ୍ର ବଳିଷ୍ଠ ଅବଲମ୍ବନ । ଏହି ସୃଜନଶୀଳ କଳ୍ପନା ଛଡ଼ା ଅନ୍ୟ ଏକ ଶ୍ରେଣୀର କଳ୍ପନାର ସ୍ୱରୂପ ସାହିତ୍ୟରେ ଦେଖା

ହୁଏ । କବି ଯେତେବେଳେ କୌଣସି ଏକ ବସ୍ତୁକୁ ଅନ୍ୟ ଏକ ବସ୍ତୁ ସହ ମିଳିତ କରିବାର ଚେଷ୍ଟାକରେ, ଯଥା ଦୁଇଟିର ସାଦୃଶ୍ୟ ବୈଷମ୍ୟ ଭିତରେ ଏକ ସୂତ୍ର ଯୋଜନା କରେ, ସେଠି ହୁଏ ସଂଯୋଜକ କଳ୍ପନା ବୃତ୍ତିର ଜନ୍ମ ଓ ଅବଧାରଣ ହୁଏ । ଏହି ବୃତ୍ତିର ନାମ ସଂଯୋଜକ କଳ୍ପନା । "Associative imagination" ଅଟେ । ଅନ୍ୟ ଏକ ଦିଗରେ କଳ୍ପନାର ରୂପ ପରିବର୍ତ୍ତି ମଧ୍ୟ ସାହିତ୍ୟ ମୂଳକୁ ସଂଧାନ କରାଯାଇ ପାରେ । ସାହିତ୍ୟରେ ଯେତେବେଳେ ବୋଧଗତାର ବ୍ୟାଖ୍ୟାନ-ମୂଳକ ସୃଷ୍ଟି କରାଯାଏ କିମ୍ବା ବିଶିଷ୍ଟ ସାହିତ୍ୟ ସାମଗ୍ରୀକୁ ଭିନ୍ନ ଭିନ୍ନ ଅର୍ଥରେ ପାଠକର ଅବବୋଧ ପାଇଁ ପ୍ରକାଶ କରାଯାଏ, ସେତେବେଳେ କଳ୍ପନାର ରୂପ ବଦଳିଯାଏ । ବ୍ୟାଖ୍ୟାର ସମସ୍ତ ସ୍ୱରୂପ ବର୍ଣ୍ଣନାର କଳ୍ପନା ନିଜର ରୂପାନ୍ତରିତ ଧାରଣ କରେ । ତାହା ହୁଏ ଅବବୋଧକ ବା ବ୍ୟଞ୍ଜନାର୍ଥକ କଳ୍ପନା । "Interp-retative imagination" । ଏହି ମନନ ଶୈଳୀ-ରୂପ ପ୍ରତି ଗର୍ଭିତ କରେ । ବୁଦ୍ଧିର ଚମତ୍କାର ପ୍ରଭାବରେ ବ୍ୟାଖ୍ୟାର୍ଥକ କଳ୍ପନାର ମାଧ୍ୟମରେ ସାହିତ୍ୟର ବିଭିନ୍ନ ସାରକୁ ଅନ୍ୱେଷଣ କରେ । ସୁତରାଂ ବ୍ୟାଖ୍ୟାର୍ଥକ କଳ୍ପନା କାବ୍ୟ ବା ସାହିତ୍ୟର ସୃଷ୍ଟି ପ୍ରତି ବିଶେଷ ଅବଦାନ ଯଦି ଅବଲମ୍ବନ ନ ହେଲେ ବି ସମୀକ୍ଷା ପ୍ରତି ଏକ ଅବଶ୍ୟ ପ୍ରୟୋଜନୀୟ ରୂପେ ଗ୍ରହଣ କରାଯାଇ ଥାଏ ।

କେବଳ ଏତିକି ନୁହେଁ, କାବ୍ୟରେ କଳ୍ପନା ଅନ୍ୟ ଦୁଇ ରୂପରେ ଦୃଷ୍ଟିଗୋଚର ମଧ୍ୟ ହୋଇଥାଏ । ମହାଯୋଗୀ ଅରବିନ୍ଦଙ୍କ ଭାଷାରେ, କବି ଯେତେବେଳେ ବାହ୍ୟ ଜୀବନ ଓ ଜଗତକୁ ପ୍ରତ୍ୟକ୍ଷ

କର ପ୍ରକାଶ କରେ ସେତେବେଳେ ତାହା ବସ୍ତୁ ନିଷ୍ଠ ବା ବସ୍ତୁ ନିଷ୍ଠ କଳ୍ପନା ଶକ୍ତି (Objective) ଦ୍ୱାରା ସମ୍ଭବ ହୁଏ । ଆଉ ସେ ଯେତେବେଳେ ଅନ୍ତର୍ଦ୍ଦୃଷ୍ଟି ଓ ଆତ୍ମାନୁଭୂତିର ଭାବ,ତାକୁ ପ୍ରକାଶ କରେ, ତାହା ବସ୍ତୁନିଷ୍ଠ ବା ବ୍ୟକ୍ତିନିଷ୍ଠ କଳ୍ପନା ଶକ୍ତିର ପ୍ରଭାବରେ ରୂପାୟିତ ହୋଇଥାଏ । (୧)

ତେଣୁ ସାହିତ୍ୟ ସୃଷ୍ଟିର ଅନ୍ତରାଳରେ ଏହି ଦୁଇ କଳ୍ପନା ଶକ୍ତି ଅହରହ କାର୍ଯ୍ୟ କରୁଥାଏ । କଳ୍ପନା ହିଁ ସାହିତ୍ୟକୁ ଗୌରବ ପ୍ରଦାନ କରେ । କାବ୍ୟର କୁଶଳତାରେ କଳ୍ପନା ତ୍ରୁମାଗତ ସମ୍ମୋହନ ଗୁଣ ବଶେଷଭାବେ ଅନୁଭୂତ ହୋଇଥାଏ । ସୁରଭି ହୀନ ପୁଷ୍ପର ଛିତି ଯେପରି ମୂଲ୍ୟହୀନ, ଗୃହଶୀ ହୀନ କାବ୍ୟର ମାଧୁର୍ଯ୍ୟ ମଧ୍ୟ ସେହିପରି ବଶ୍ରିଦ୍ଧ । କାବ୍ୟ ଓ କଳ୍ପନା ଏକ ପାରସ୍ପରିକ ପରିପୂରକ ଅନ୍ତରଙ୍ଗତା ।

**କାବ୍ୟ ଓ ଅନୁକରଣ ।**

ସାହିତ୍ୟ ତଥା ଶିଳ୍ପର ସାମାନ୍ୟ ଧର୍ମ ଅନୁକରଣ (Art is imitation- mimesis) କାବ୍ୟ ମହାକାବ୍ୟ, ନାଟକ, କାହେଣ, ଗଳ୍ପ ଓ ସଙ୍ଗୀତ ପ୍ରତ୍ୟେକର ଏହି ସାମାନ୍ୟ ଧର୍ମ

(୧) The objective imagination which visualises strongly the outward aspects of life and things the subjective imagination which visualises strongly the mental and emotional impressions they have the power to start in the mind.

(The future Poetry, Style and Substance (Aurobind)

ମାଧ୍ୟମରେ ପ୍ରକାଶିତ ଏକ ରୂପ ବିଶେଷ ବୋଲି ଆରିଷ୍ଟୋଟଲ୍ ଓ ପ୍ଲେଟୋଙ୍କ ମତ। ଉଭୟଙ୍କ ମତରେ ଶିଳ୍ପର ବିଳକ୍ଷଣ ବୈଶିଷ୍ଟ୍ୟହିଁ ଅନୁକରଣ। ସୁତରାଂ ସାହିତ୍ୟ ଶିଳ୍ପର ମୌଳିକ ଲକ୍ଷଣ ମଧ୍ୟ ଏହି ଅନୁକରଣରେ ନିହିତ । କିନ୍ତୁ ଅନ୍ୟ ଶିଳ୍ପଠାରୁ ସାହିତ୍ୟ ଶିଳ୍ପର ପାର୍ଥକ୍ୟ ମାତ୍ର ଏଇ ଯେ, ସାହିତ୍ୟିକ ଅନୁକରଣର ମାଧ୍ୟମ ଭାଷା ; ଦୃଶ୍ୟତ ଅନ୍ୟାନ୍ୟ ସବୁ ଶିଳ୍ପର ସ୍ୱାତନ୍ତ୍ର୍ୟ ଭିନ୍ନ ।

ସୃଜନ ବ୍ୟାପାରରେ ଅନୁକରଣ ତତ୍ତ୍ୱର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସ୍ରଷ୍ଟା ରୂପର କଳ୍ପନା କରେ ; ଜୀବନର ଜୀବନ୍ୟାସ କରେ । ଭାବର ଜଗତ ସୃଷ୍ଟି କରେ । ସତ୍ୟର ପ୍ରତିଷ୍ଠା କରେ । ଏ ସବୁ ରୂପର ପୁନଃ ସ୍ଥାପନ ନୁହେଁ । ବରଂ ରୂପାନୁକୃତି ବା ରୂପାନ୍ତରୀକରଣ । ଏବଂ ଏହି ରୂପାନ୍ତରୀକରଣ ପ୍ରକ୍ରିୟାରେ ଅନୁକରଣ ତତ୍ତ୍ୱର ନିର୍ଯ୍ୟାସ ନିହିତ । ଅନୁକରଣ ଅର୍ଥ ପ୍ରକୃତିର ବା ଜୀବନର ପ୍ରତିରୂପ ରଚନା— Imitation of an appearance (Republic- plato 340 ) ପ୍ଲେଟୋଙ୍କ ଦୃଷ୍ଟିରେ ଅନୁକରଣ ଏକ ବ୍ୟାପକ ଅର୍ଥରେ ପ୍ରଯୁକ୍ତ । ତାଙ୍କ ମତରେ ସାହିତ୍ୟରେ ଯେଉଁ ଭାବର ପ୍ରକାଶ ହୁଏ ତାହାହିଁ ଅନୁକରଣ ବୃତ୍ତିର ଏକ ଅବଦାନ । ତେଣୁ ଅନୁକରଣ କେବଳ ରୂପକଳ୍ପନା ନୁହେଁ, ଭାବ କଳ୍ପନା ମଧ୍ୟ । ଅନୁକରଣ ସଞ୍ଚାର ଏହି ବ୍ୟାପକତାରୁ ସଚେତନ ହୁଏ, ଶିଳ୍ପୀର ଆବେଦନ ଭରା ଅନ୍ତରରୁ ଯେଉଁ ରଙ୍ଗ ଓ ଭାବର ଉଚ୍ଛ୍ୱାସ ପ୍ରକାଶ ଯୋଜନା ତାହାଙ୍କ ସେ ସବୁ ଅନୁକରଣ ବ୍ୟାପାରର ଅଧୀନ ଅନୁକରଣ ମଧ୍ୟରେ ଜୀବନ ଓ ଜଗତର ଅନୁକରଣ । ଏହାର ଏମନ୍ତ ଜୀବନର ରୂପ, ବ୍ୟକ୍ତିର ଚେତନା ବସ୍ତୁର ସତ୍ତ୍ୱ, ହୃଦୟର ଆବେଗ ଓ ଉଚ୍ଛ୍ୱାସର ପ୍ରକ୍ଷେପ ।

କାବ୍ୟ, କଳା ଓ ସାହିତ୍ୟର ସୃଷ୍ଟି ସହ ଯାହା ସଂଯୁକ୍ତ ଅନୁକରଣ ସେ ବୃହତ୍ତର ଉପାଦାନ ।

ସତ୍ୟର ପ୍ରକାଶ ହିଁ କାବ୍ୟ ଏବଂ ଏହି ସାମାନ୍ୟ ସତ୍ୟର ଏକ ବିଶେଷ ଅଭିବ୍ୟକ୍ତି ହିଁ ଅନୁକରଣ । ଅନ୍ୟ ଅର୍ଥରେ ବହିର୍-ଦୃଷ୍ଟିରେ ଯାହା ସୃଷ୍ଟି, ହୁଏତ ଅନ୍ତର୍ଦୃଷ୍ଟିରେ ତାହା ଅନୁକରଣ ।

କାବ୍ୟ ବା କଳା ମୂଳବସ୍ତୁର ଯଥାଯଥ ଅନୁକରଣ ନୁହେଁ ବସ୍ତୁ ସ୍ରଷ୍ଟା ମନରେ ଯେପରି ପ୍ରତିଭାତ, ସେହି ରୂପର ଉପସ୍ଥାପନା ଶିଳ୍ପ ସୃଷ୍ଟି, ସୁତରାଂ ପୁନରନୁକରଣ ଓ କଳ୍ପନା ଦୁଇର ଏକ କ୍ରିୟା ।

ଅନୁକରଣ Imitation is an Aesthetic term ଅନୁକରଣରେ କାବ୍ୟର ଅର୍ଥ ସ୍ୱାତନ୍ତ୍ର୍ୟ— ମୂଳବସ୍ତୁର ପୁନରାବୃତ୍ତି Reproduction of the original. । କାବ୍ୟ ଓ ଅନୁ-କରଣର ସମ୍ବନ୍ଧ ନିହାତି ନିବିଡ଼ ।

## କାବ୍ୟ ଓ ବକ୍ରୋକ୍ତି :—

ବକ୍ରୋକ୍ତି କାବ୍ୟ ଜୀବନମ— କାବ୍ୟର ପ୍ରାଣହିଁ ବକ୍ରୋକ୍ତି । ଆଳଙ୍କାରିକ କୁନ୍ତକଙ୍କର ସୂକ୍ତିରେ ଏହା ପ୍ରତିଷ୍ଠିତ । ଏହା ଏକ ଶୈଳୀଗତ ଆଲୋଚନା । କାବ୍ୟର ସୃଷ୍ଟି ଧର୍ମରେ ନୁହେଁ—ବରଂ ସମୃଦ୍ଧି ପାଇଁ ବକ୍ରୋକ୍ତିର ପ୍ରୟୋଜନୀୟତା କୁନ୍ତକ ଖୁବ୍ ଗମ୍ଭୀରଭାବେ ଅନୁଧ୍ୟାନ କରନ୍ତି । କାରଣ ଦେଖିବାକୁ ଗଲେ ଜଣାଯାଏ କାବ୍ୟର ସ୍ୱରୂପ ଚିହ୍ନଟ ପାଇଁ ଭାଷାର ଅବଲମ୍ବନ ବିଶେଷଭାବେ ସ୍ୱୀକୃତ । କାବ୍ୟରେ ପ୍ରଯୁକ୍ତ ଭାଷା, ସାଧାରଣର ଭାଷା ନୁହେଁ । ବରଂ ଚମତ୍କାର, ଚତୁର, ମନୋହର ଓ ରସୋ-ଦ୍ଦୀପକ । ଭାଷାର ଏହି ଚମତ୍କାରିତା ଓ ଚାତୁର୍ଯ୍ୟ ପାଇଁ ବାଣୀଭଙ୍ଗୀ

ଓ ପ୍ରକାଶଭଙ୍ଗୀରେ ସାମାନ୍ୟ ନୈପୁଣ୍ୟ ପ୍ରକାଶ ପାଇବା ଉଚିତ୍ । ତେଣୁ କାବ୍ୟରେ ବକ୍ରୋକ୍ତି ପ୍ରଚଳିତ ହୋଇଥାଏ । ବକ୍ରୋକ୍ତି ଅର୍ଥ— ବକ୍ରାଃ ମନୋହରାଃ ଯାଉକ୍ତି ସା ବକ୍ରୋକ୍ତି କଥ୍ୟା ବର୍ଣ୍ଣିକୃତା! ଉକ୍ତି ବକ୍ରୋକ୍ତି । ସାଧାରଣ ଅର୍ଥରୁ ପ୍ରତୀତ ହୁଏ ସରଳ ସହଜ ଭଙ୍ଗୀରେ କୌଣସି ବସ୍ତୁ ପ୍ରକାଶ ନ କରି ବଙ୍କେଇ ପ୍ରକାଶ କଲେ; ସେଠି ବକ୍ରୋକ୍ତି ହୁଏ । ମନୋହର ଓ ଚମତ୍କାର ଲକ୍ଷଣ ଥିବାରୁ ବକ୍ରୋକ୍ତି କୁହାଯାଏ । ବକ୍ରୋକ୍ତି ପୁଣି 'ବୈଦଗ୍ଧ ଭଙ୍ଗୀ ଭଣିତ'— ଅର୍ଥାତ୍ ବୈଦଗ୍ଧ୍ୟ ବା କଳାନିପୁଣ, ଭଙ୍ଗୀ ବା ଚମତ୍କାର ଭଣିତ ବା ଲକ୍ଷଣ ଗୁରୁତ୍ୱରେ ବକ୍ରୋକ୍ତିର ଅସ୍ତିତ୍ୱ ସାଧାରଣତଃ ନିହିତ । ତାହାହେଲେ ବକ୍ରୋକ୍ତି ପଦ କାବ୍ୟର ପ୍ରାଣତୁଏ ଚମତ୍କାର ବାଣୀଭଙ୍ଗୀ ପଦ ବକ୍ରୋକ୍ତି ଗଠନର ସହାୟତା କରେ, କିନ୍ତୁ ପ୍ରତ୍ୟେକ ବଙ୍କିଆ ଉକ୍ତି କଣ କାବ୍ୟ ? ଏହା ଏକ ବଡ଼ ଆଳଙ୍କାରିକ ସମସ୍ୟା ।

ପ୍ରତ୍ୟେକ ବୁଦ୍ଧିଦୀପ୍ତ ଭଙ୍ଗୀ ଭଣିତ ରସୋଦ୍ଦୀପ୍ତ ନୁହେଁ । ପୁଣି ନୀରସବାଣୀଭଙ୍ଗୀ କାବ୍ୟ ନୁହେଁ । ତେଣୁ ଉକ୍ତି ପଦ ରସ ଚମତ୍କାର ନ ହୁଏ ତାହାହେଲେ ତାହା କାବ୍ୟ ହୋଇ ନ ପାରେ । ବକ୍ରୋକ୍ତି କାବ୍ୟର ଗୌରବ ଲାଭପାଇଁ ରସମୟ ହେବା ବାଞ୍ଛନୀୟ ।

## କାବ୍ୟ ଓ ଅଳଙ୍କାର :—

ପ୍ରକାଶ ପ୍ରବୃତ୍ତିରୁ କାବ୍ୟର ଉନ୍ମେଷ । ସକ୍ରିୟକରଣ ବୃତ୍ତିରୁ ଅଳଙ୍କାରର ଜନ୍ମ । ଅଳଙ୍କାର ଆଡମ୍ବରର ପ୍ରତୀକ । ରୂପର ଉପାଦାନ । କାବ୍ୟର କଳେବର ପରିପୁଷ୍ଟିରେ ଅଳଙ୍କାର ଏକ ଅପରିହାର୍ଯ୍ୟ ଆବଶ୍ୟକତା । ତଥାପି ଏହାର ଅର୍ଥ ନୁହେଁ ଯେ ସାହିତ୍ୟରେ ନିରଳଙ୍କାର କାବ୍ୟ ବିରଳ । ଅଳଙ୍କାରର ପ୍ରୟୋଗ

ନ ଥାଇ ମଧ୍ୟ କାବ୍ୟ ସୃଷ୍ଟି ସମ୍ଭବ । କିନ୍ତୁ ତାହା ରସମୟ ହେବା ବାଞ୍ଛନୀୟ । ତେଣୁ କେତେକଙ୍କ ମତରେ କାବ୍ୟରେ ଅଳଙ୍କାରର ମହତ୍ତ୍ୱ ଗୌଣ, ବରଂ କାବ୍ୟରେ ରସର ସ୍ଥାନ ପ୍ରଥମ । ଗୁଣ ଦ୍ୱିତୀୟ ଓ ଅଳଙ୍କାର ତୃତୀୟ ସ୍ଥାନର ଅଧିକାରୀ ।

ଅଳଙ୍କାର ଶବ୍ଦର ଚାରିତ୍ରିକ ବିଶ୍ଳେଷଣରୁ ମନେହୁଏ ଯାହା ଭୂଷିତ କରେ ତାହା ଅଳଙ୍କାର । ଅଳମ କରୋତି ଇତିଃ ଅଳଙ୍କାର ଅଳମ୍ ଅର୍ଥ ଭୂଷଣ । ତେଣୁ ଅଳଙ୍କାର କାବ୍ୟର ଭୂଷଣ । କାବ୍ୟରେ ଏହି ଅଳଙ୍କାରର ସ୍ଥାନ, ସଂଜ୍ଞା ଓ ସ୍ୱରୂପ ସମ୍ପର୍କରେ ବହୁ ଆଚାର୍ଯ୍ୟଙ୍କର ବହୁମତ ପ୍ରଚଳିତ । ସାହିତ୍ୟ ଦର୍ପଣକାର ବିଶ୍ୱନାଥଙ୍କ ମତରେ ଅଳଙ୍କାର କାବ୍ୟର ଏକ ଅସ୍ଥିର ଧର୍ମ । ଏହା ପରିବର୍ତ୍ତନଶୀଳ ଏବଂ ଅବଶ୍ୟ ଆବଶ୍ୟକତା ହିସାବରେ ଗୃହୀତ ହେବାମଧ୍ୟ ବାଞ୍ଛନୀୟ ନୁହେଁ ।

ଏହି ଅଳଙ୍କାରର ସଂଖ୍ୟା, ଅନେକେ ନିରୂପଣ କରିବାକୁ ଯାଇ ତ୍ରୁଟି କରନ୍ତି; କିନ୍ତୁ ପ୍ରକୃତରେ ବାଗ୍‌ଭଙ୍ଗୀହିଁ ଅଳଙ୍କାର । ଏହା ପ୍ରାୟ କୁନ୍ତକଙ୍କ ବକ୍ରୋକ୍ତି ନିରୂପଣ ସହ ସମାନ । ବୈଦଗ୍ଧ୍ୟଭଙ୍ଗୀ ଭଣିତହିଁ ବକ୍ରୋକ୍ତି ଏବଂ ଏହି ବକ୍ରୋକ୍ତିହିଁ ଅଳଙ୍କାର ଓ ଅଳଙ୍କାରହିଁ କାବ୍ୟର ସୌନ୍ଦର୍ଯ୍ୟ ।

ଆଚାର୍ଯ୍ୟ ଦଣ୍ଡୀ ମହାଶୟଙ୍କ ମତରେ କାବ୍ୟର ଶୋଭା କାରକ ଧର୍ମହିଁ, ଅଳଙ୍କାର । ପୁଣି ଗୁଣମଧ୍ୟ କାବ୍ୟର ଶୋଭା ବିଧାୟକ ଧର୍ମ କିନ୍ତୁ ଗୁଣ ଅଳଙ୍କାର ନୁହେଁ । କାରଣ ଦୁଇଟିର ଧର୍ମ ସମାନ ନୁହେଁ । ଦୁଇଟି ଯଦିଓ କାବ୍ୟୋତ୍କର୍ଷ ସାଧନକାରୀ, ତଥାପି ପରସ୍ପର ସ୍ୱତନ୍ତ୍ର । ଦଣ୍ଡୀଙ୍କ ଦୃଷ୍ଟିରେ ଗୁଣ କାବ୍ୟର ପ୍ରାଣ; ବାମନଙ୍କ ମତରେ ଗୁଣ କାବ୍ୟର କାବ୍ୟତ୍ୱ ଆଣେ । କିନ୍ତୁ

ଅଳଙ୍କାର କାବ୍ୟକୁ ଉତ୍କର୍ଷ ପ୍ରଦାନ କରେ । ବିଶ୍ୱନାଥ ଏ ସବୁ ମତର ପୃଷ୍ଠପୋଷକତା କରି କହନ୍ତି, ଯାହା ଶବ୍ଦ ଓ ଅର୍ଥର ଶୋଭା ବର୍ଦ୍ଧନ କରେ, ଶବ୍ଦ ଓ ଅର୍ଥକୁ ଯେ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ପ୍ରଦାନ କରେ, ତାହାହିଁ ହୁଏ ଅଳଙ୍କାର ।

କବି ଜୟଦେବଙ୍କ ବିଚାରରୁ ମନେହୁଏ କାବ୍ୟ, ଶବ୍ଦ ଓ ଅର୍ଥର ପ୍ରସିଦ୍ଧି ବା ବନ୍ଧ ପ୍ରୌଢ଼ିରେ ମନୋହାରିତ୍ୱ ଲାଭକଲେ କାବ୍ୟଶ୍ରୀ ସମୃଦ୍ଧ ହୁଏ । ଅଳଙ୍କାର ରସର ପରିଚର୍ଯ୍ୟା କରେ । ରସ ନିର୍ମାଣରେ ଅଳଙ୍କାରର ଭୂମିକା ମଧ୍ୟ ମହତ୍ତ୍ୱପୂର୍ଣ୍ଣ । ରସ ଶବ୍ଦାର୍ଥ ଗତ । ତେଣୁ ଶବ୍ଦ ଓ ଅର୍ଥର ସୌଷ୍ଠବରେ ଅଳଙ୍କାର ସ୍ୱଷ୍ଟ ପୁଷ୍ଟ ହୁଏ । ଅଳଙ୍କାରର ଉଦ୍ଦେଶ୍ୟ କାବ୍ୟରେ ଭାବର ତୀବ୍ରତା ପ୍ରଦାନ କରିବା । କାରଣ ଅଳଙ୍କାର ଭାବ ପ୍ରକାଶନର ଏକ ଚମତ୍କାର ଅଙ୍ଗ । ଅଳଙ୍କାରର ପ୍ରୟୋଗ କାବ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ । ଏ ସୌନ୍ଦର୍ଯ୍ୟ ଭାବର ହୋଇପାରେ କିମ୍ବା ଅଭିବ୍ୟକ୍ତିର କୌଶଳରେ । ସେ ଯାହା ହେଉନା କାହିଁକି ଭାବସଜ୍ଜା ପାଇଁ ଓ ତାର ରମଣୀୟ ରୂପଶ୍ରୀ ପାଇଁ ଅଳଙ୍କାର ଏକ ଶ୍ରେଷ୍ଠ ସହାୟକ । ପୁଣି ଭାବ ଅଭିବ୍ୟକ୍ତିରେ ଚାତୁର୍ଯ୍ୟତା ସୃଷ୍ଟି ଓ ପ୍ରଭାବ ପ୍ରତିଷ୍ଠା ପାଇଁ ଅଳଙ୍କାରର ଦାୟିତ୍ୱ କାବ୍ୟରେ ନିତାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ କାବ୍ୟରେ ଅଳଙ୍କାର ସମାବେଶ ପାଇଁ ଭାବ ଓ ରସ ଅଙ୍ଗର ଆଶ୍ରୟ ଗ୍ରହଣ କରିବା ନିତାନ୍ତ ବାଞ୍ଛନୀୟ ।

କାବ୍ୟରେ ଅଳଙ୍କାର ; ଭାବ ଓ ଭାଷାର ଭୂଷଣ । ଭାଷା ଯଦି ମଧୁର ନ ହୁଏ, ଭାବ ଯଦି ସଜୀବ ନ ହୁଏ, କାବ୍ୟରେ ସମ୍ବେଦନ ସୃଷ୍ଟି ଏକ ବିଫଳତାର ପରିଚୟ ସ୍ୱୀକାର କରେ । ଏଥି ସହିତ ଏ ମଧ୍ୟ ଏକ ସୂକ୍ତି ଯେ, ଯଦି ରସଭାବରେ ଅଳଙ୍କା-

ରଶ୍ମିପୁ ଅନୁଭୂତ ନ ଥାଏ, ତାହାହେଲେ ଅଲଙ୍କାରର ପଟେଅଛା ବ୍ୟବହାର କାବ୍ୟକୁ ନିରଳଙ୍କାର କରେ । ନିଷ୍ପ୍ରାଣ ଶବଦେହରେ ଅଳଙ୍କାରର ସମଣ୍ଡନ ଯେପରି ରୁଚି ବିତୃଷ୍ଣାର ପ୍ରତିପାଦକ, ସେହିପରି ରସହୀନ କାବ୍ୟରେ ଅଳଙ୍କାରର ସ୍ଥିତି ।

କାବ୍ୟରେ ଅଳଙ୍କାର ସାଧାରଣରେ ମାନସିକତାର ଏକ ପ୍ରତିରୂପ । ସଜ୍ଜୀକରଣ ପ୍ରବୃତ୍ତି ଏହି ପ୍ରଚେଷ୍ଟାର ଅନ୍ତରାଳରେ ପଚ୍ଛନ୍ନ । ଜନନୀ ତାର ପ୍ରତିରୂପ ଯେପରି ସନ୍ତାନ ଠାରେ ଅନୁଭବ କରେ ଓ ତାକୁ ଟିକିଏ ମନୋହାରୀ ଓ କମନୀୟ କରିବା ପାଇଁ ନାନା ବେଶରେ ବିଭୂଷିତ କରେ, ସେହିପରି, ବେଶ ବିଭୂଷିତ ସନ୍ତାନର ରୂପଲାବଣ୍ୟ ଉପଭୋଗ କରି ଆତ୍ମାକୁ ଶାନ୍ତି ଦିଏ, ଠିକ୍ ସେହିପରି ତା'ର ମାନସ ସନ୍ତାନ କାବ୍ୟକୁ ବିଭିନ୍ନ ଭୂଷଣରେ ସୁଭଦ୍ର ସୁକୁମାର କରି ଅନ୍ତରର ଆହ୍ଲାଦ ଅନୁଭବ କରେ । କାବ୍ୟ ସୃଷ୍ଟି ମୂଳରେ ଥିବା ଏହି ମନୋବୃତ୍ତି କେବଳ ଶାସ୍ତ୍ରଗତ ନୁହେଁ । ବରଂ ଅନେକାଂଶରେ ମନସ୍ତାତ୍ତ୍ୱିକ । ମନୁଷ୍ୟ ମନର ସୌନ୍ଦର୍ଯ୍ୟ ପ୍ରିୟତା ଏହି ଅଳଙ୍କାର ସଂଯୋଜନାରେ ଲୁକ୍କାୟିତ । ରବୀନ୍ଦ୍ରଙ୍କ ଶବ୍ଦରେ କାବ୍ୟରେ ଅଳଙ୍କାର ଛବି ସ୍ୱରୂପ । ସେ କହନ୍ତି, ଭାଷା ଯାହା ପ୍ରକାଶ କରି ପାରେନା ରେଖା ତାହା ରୂପ ଦିଏ । ଉପମା ଓ ରୂପକର ମାଧ୍ୟମରେ ଭାବ ସମୂହ ପ୍ରତ୍ୟକ୍ଷ ହୁଏ । ଛନ୍ଦ ଓ ସଙ୍ଗୀତ ମାଧୁର୍ଯ୍ୟର ପ୍ରଧାନ ଉପକରଣ । ଛନ୍ଦ ଭାବକୁ ସ୍ୱରୂପ ଦାନ କରେ । ସଙ୍ଗୀତ ତାହାକୁ ଗତିଶୀଳ କରେ । ଚିତ୍ର, ଶରୀର ଓ ସଙ୍ଗୀତ, ପ୍ରାଣ । କେବଳ ଏତିକି ନୁହେଁ କାବ୍ୟର ଅମୂଲ୍ୟ ଆବଶ୍ୟକତା ସମ୍ପର୍କରେ ଅନେକ ପାଶ୍ଚାତ୍ୟ କାବ୍ୟଶାସ୍ତ୍ରବିତ୍ ମଧ୍ୟ ସଦୃଶ ମତ ପ୍ରଦାନ କରିଥାଆନ୍ତି । H. Caudwell କହନ୍ତି ; "All men

under the stimulus of feellings become poets in some very small degree. In a state of excitment they will have recourse to metapher, similes, personi- fications exaggeration. And as the effect of these emotions on the ordinary man is to make him see pictures speak in images, so it is with greater intensity on the artist.............. these have always been poetic forms of speech." ବାସ୍ତବିକ ଅବେଗର ଆବେଦନରେ ବ୍ୟକ୍ତି କବି ହେବା ସମ୍ଭବ । କବିର କବିତା ମର୍ମସ୍ପର୍ଶୀ ହେବାକୁ ହେଲେ କେବଳ ଆବେଗଜନିତ କିଛି ସଂଯୋଗ ଆବଶ୍ୟକ । ତାହାକୁ ଉପମା, ରୂପକ, ଉତ୍ପ୍ରେକ୍ଷାର ସ୍ଵଂସ୍ପର୍ଶ ଲାଗି ଏ ସବୁର ସାହାଯ୍ୟ ନିଏ । ସହୃଦୟର ମନରେ ପ୍ରଭାବ ଓ ପ୍ରତିଫଳନର ପ୍ରତିଷ୍ଠା ପାଇଁ ।

କାବ୍ୟରେ ଅଳଙ୍କାରର ବ୍ୟବହାର ଏନେଇ ବ୍ୟାପକ ଯେ, ତାହା ଏକ ସ୍ଵଷ୍ଟସ୍ଵୀକାରରୁ ସ୍ପଷ୍ଟ ଅନୁମେୟ । ଭାରତୀୟ ସାହିତ୍ୟରେ ରସପ୍ରାଣ କବି କାଳିଦାସଙ୍କ ସୃଷ୍ଟି ଅଳଙ୍କାର ନିକର । Similes of Kali Das. K. Chellapan Pillai ଙ୍କ ପରିସଂଖ୍ୟାନରୁ ମନେହୁଏ, ମହାକବି କାଳିଦାସଙ୍କ କାବ୍ୟ ନାଟକରେ ପ୍ରଯୁକ୍ତ ସମସ୍ତ ଉପମାର ସଂଖ୍ୟା ହାପୁଁସ ତେ ବାର ଶହ । ତେଣୁ ଉପମା କାଳିଦାସସ୍ୟ କଥାଟା ଅଯଥା ନୁହେଁ । ଉପମା ଅଳଙ୍କାର ପରିବେଷଣରେ ତାଙ୍କ କାବ୍ୟ ସୁନ୍ଦର । ସୁତରାଂ କାବ୍ୟରେ ଅଳଙ୍କାରର ସ୍ଥିତି ରସମାଧୁର୍ଯ୍ୟ ବୃଦ୍ଧିର

ସହାୟକ ଓ ଭାବାଭିବ୍ୟକ୍ତିର ପରିପୋଷକ । କାବ୍ୟ ଓ ଅଳଙ୍କାରର ସମ୍ବନ୍ଧ ସାହିତ୍ୟ ସୃଷ୍ଟିରେ ପାରସ୍ପରିକ ଓ ଆପେକ୍ଷିକ ।

**ଅଳଙ୍କାରର ବ୍ୟାପକତା :—**

ଅଳଙ୍କାରର ସଂଖ୍ୟା ସୀମାବଦ୍ଧ ନୁହେଁ । ଭାବର ପ୍ରକାଶ ଯେପରି ଅନନ୍ତ ଓ ଅପରିମେୟ, ଅଳଙ୍କାରର ସୃଷ୍ଟି ସେହିପରି ଅସୀମ । ଶବ୍ଦ ଓ ଅର୍ଥର ବିଭିନ୍ନ ପ୍ରୟୋଗରେ ଅଳଙ୍କାର ସ୍ୱତନ୍ତ୍ର ସ୍ୱରୂପ ଧାରଣ କରିଥାଏ । ଶବ୍ଦର ଗୌରବ ପ୍ରତିଷ୍ଠିତ ହେଲେ ଶବ୍ଦାଳଙ୍କାର ହୁଏ । ଅର୍ଥର ଗୌରବ ସୂଚିତ ହେଲେ ତାହା ଅର୍ଥାଳଙ୍କାର ରୂପେ ସୂଚିତ ହୁଏ । ଶବ୍ଦ ଓ ଅର୍ଥ ଏହି ଦ୍ୱୟଙ୍କ ସହିତ ବ୍ୟତୀତ ଧର୍ମ ଦୃଷ୍ଟିରୁ ଅଳଙ୍କାର ଗୁଡ଼ିକ ମଧ୍ୟ ଭିନ୍ନଭିନ୍ନ ଶ୍ରେଣୀରେ ବିଭକ୍ତ । କାବ୍ୟ ଶାସ୍ତ୍ରରେ ନିରୂପିତ ଅଳଙ୍କାର ମଧ୍ୟରୁ କେତେକ (୧) ସାଦୃଶ୍ୟ ମୂଳକ, (୨) ବିରୋଧ ମୂଳକ, (୩) ଶୃଙ୍ଖଳା ମୂଳକ, (୪) ତର୍କ ନ୍ୟାୟ ମୂଳକ, (୫) ଗୂଢ଼ାର୍ଥ ପ୍ରତୀତି ମୂଳକ, (୬) ବାକ୍ୟନ୍ୟାୟ ମୂଳକ (୭) ଲୋକନ୍ୟାୟ ମୂଳକ । ଏତଦ୍ ଭିନ୍ନ ଅନେକ ମଧ୍ୟ ବିବିଧ ଶ୍ରେଣୀରେ ଅନ୍ତର୍ଭୁକ୍ତ । କାବ୍ୟରେ ଅଳଙ୍କାର ସୀମା ଯେତେ ବ୍ୟାପକ, ସଂଖ୍ୟା ଯଦି ଏତେ ଅପରିମେୟ, ତାହାହେଲେ ପରିମାଣାତ୍ମକ ଦୃଷ୍ଟିରୁ କାବ୍ୟରେ ଅଳଙ୍କାରର ସ୍ଥିତି ନିଶ୍ଚୟ ମହତ୍ତ୍ୱପୂର୍ଣ୍ଣ । ସେହି ମହତ୍ତ୍ୱପୂର୍ଣ୍ଣ ଅଳଙ୍କାରର ସ୍ୱଭାବ ପରିଚୟ, ଲକ୍ଷଣ ଓ ସଂକେତ ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ।

## ଅଳଙ୍କାର ପରିଚୟ

ଶବ୍ଦ ଓ ଅର୍ଥର ଗୌରବ ପ୍ରତୀତ ହେଲେ ସାଧାରଣତଃ କାବ୍ୟ ଶାସ୍ତ୍ରରେ ତାହା ଅଳଙ୍କାର ରୂପେ ଉଲ୍ଲିଖିତ ହୋଇଥାଏ ।

ଅଳଙ୍କାର କାବ୍ୟର ସୌନ୍ଦର୍ଯ୍ୟ ଆଧାୟକ ; ରସୋଦ୍ରେକକାରକ ଏକ ଅସ୍ଥିର ଧର୍ମ । ଅଳଙ୍କାରର ପ୍ରୟୋଗ କାବ୍ୟରେ ରସାନୁପାତକ ହେବା ଉଚିତ୍ । ସଂଖ୍ୟାଧିକ ଅଳଙ୍କାରର ଭୂଷଣ ଯେପରି କୁମାରୀ ସୌନ୍ଦର୍ଯ୍ୟ ବୃଦ୍ଧିର ପରିପନ୍ଥୀ ହୁଏ, ସେହିମିତ ଯଥେଚ୍ଛା ଅଳଙ୍କାର ପ୍ରୟୋଗ କାବ୍ୟ ଶୋଭା ବିନଷ୍ଟ କରେ । ଯେହେତୁ ଶବ୍ଦ ଓ ଅର୍ଥ ସହ ଅଳଙ୍କାର ଜଡ଼ିତ ; ତେଣୁ କାବ୍ୟରେ ଶବ୍ଦ ଓ ଅର୍ଥର ସୌକୁମାର୍ଯ୍ୟରେ କାବ୍ୟର ପୂର୍ଣ୍ଣଶୋଭା ପ୍ରକାଶିତ ।

ଶବ୍ଦର ରୂପ ଧ୍ୱନି ଓ ଅର୍ଥ ।

ଧ୍ୱନିଦ୍ୱାରା ଶବ୍ଦର ଗୌରବ ସୂଚିତ ହୁଏ ଏବଂ କାବ୍ୟରେ ଶବ୍ଦର ମହତ୍ତ୍ୱ ପ୍ରକଟିତ ହେଲେ ସେଟି ଶବ୍ଦାଳଙ୍କାର ହୁଏ ।

**ଶବ୍ଦ ଅର୍ଥ ଓ ଉଭୟାଳଙ୍କାର—**

ଏହା କାବ୍ୟର ଏକ ସଂଗୀତ ଧର୍ମ । ପୁଣି ଅର୍ଥର ଅପେକ୍ଷାରେ ଅର୍ଥାଳଙ୍କାର ହୁଏ । ଏହା କାବ୍ୟର ଚିତ୍ରଧର୍ମ । କିନ୍ତୁ ଯେଉଁଠି ଉଭୟ ଶବ୍ଦ ଓ ଅର୍ଥର ଚମତ୍କାରତା ଦେଖାଦିଏ, ସେଠାରେ ଉଭୟାଳଙ୍କାର ହୋଇଥାଏ ।

ତେବେ ଶବ୍ଦର ଚମତ୍କାରରେ ଶବ୍ଦାଳଙ୍କାର । ଏହା ପୂର୍ଣ୍ଣତଃ ଶବ୍ଦାଶ୍ରିତ । କିନ୍ତୁ ଅର୍ଥାଶ୍ରିତ ନୁହେଁ । କେତେକ ଶବ୍ଦାଳଙ୍କାର ବର୍ଣ୍ଣଗତ, କେତେକ ଶବ୍ଦଗତ ଓ କେତେକ ବାକ୍ୟଗତ ହୋଇଥାଏ । ଛେକାନୁପ୍ରାସ ଶବ୍ଦଗତ ଓ ଲାଟାନୁପ୍ରାସ ବାକ୍ୟଗତ । ସେ ଯାହାହେଉ ଏହି ଶବ୍ଦାଳଙ୍କାରର ପରିବାର ବୃହତ୍ । ଅନେକ ପ୍ରକାରର ଅଳଙ୍କାର ଏହି ପରିବାରର ଅନ୍ତର୍ଭୁକ୍ତ । ନିମ୍ନରେ ସେଗୁଡ଼ିକର ପରିଚୟ ପ୍ରକାଶିତ ହେଲା ।

## ଅନୁପ୍ରାସ ( *Alliteration* )

ପଦ ବା ବାକ୍ୟ ମଧ୍ୟରେ ଏକ ବା ଏକାଧିକ ବ୍ୟଞ୍ଜନବର୍ଣ୍ଣ ଯୁକ୍ତଭାବରେ କେବଳ ସଂଯୁକ୍ତ ଭାବେ କେତେ ପୁନଃ ପୁନଃ ଧ୍ୱନିତ ହେଲେ ସେଠାରେ ଅନୁପ୍ରାସ ହୋଇଥାଏ । ତା ଛଡ଼ା ସମାନ ଆକାର ବା ସାଦୃଶ୍ୟ ଥିବା ବର୍ଣ୍ଣର ବିନ୍ୟାସକୁ ମଧ୍ୟ ଅନୁପ୍ରାସ କହନ୍ତି । ବ୍ୟଞ୍ଜନର ସମତା ଥିଲେ ବି ଅନୁପ୍ରାସ ହୁଏ । ସ୍ୱର ଧ୍ୱନିର ବିଷମତାରେ ମଧ୍ୟ ଅନୁପ୍ରାସ ହୋଇଥାଏ । ଇଂରେଜୀ କାବ୍ୟ ଶାସ୍ତ୍ରରେ ଏହି ସମ୍ପର୍କରେ କୁହାଯାଇଛି—

Alliteraticn occures, when two or more Syllables in close proximity commence with the same consonant— Smith.

ଉଦାହରଣ :—

(କ) ଉତ୍କଳ କମଳା ବିଳାସ ଦୀର୍ଘିକା ।
ମରାଳ ମାଳିନୀ ନୀଳାମ୍ବୁ ଚାଳିକା (ଚିଲିକା)

(ଖ) ସୁରୂପା ସଂସ୍ଥା ଲେଖେ ଅଗୋଚର
ପୂର୍ଣ୍ଣାସ୍ପଦ ହେଲ ଗୋଷ୍ପଦ ପୁଷ୍କର ! ( ଚିଲିକା )

(ଗ) ଦେଖି ନବ ବାଳିକା ବଉଳିକା ମାଳିକା
ଅଳି କାଳିକା କାନ୍ତ ସ୍ୱନ
ରକ୍ଷା କେମନ୍ତେ କର, ଭରସା ମନ୍ତ୍ରକଃ ଗଢ଼ିକ ଏମନ୍ତ
ବଗୁରୁ ସେ ସଦବସ୍ତ । (ଲବଣ୍ୟବତୀ)

ବିଶ୍ଳେଷଣ :— ପ୍ରଥମ ପଦରେ 'କ' ଓ 'ଳ' ର ପୁନଃ ପୁନଃ ଆବୃତ୍ତି । ୨ୟ ପଦରେ 'ସ' ଓ 'ନ' ର ପୁନଃ ପୁନଃ ଆବୃତ୍ତି ଏବଂ ୩ୟ ପଦରେ 'ଳ କ' ର ଏକାଧିକ ଧର୍ମିକ ପୁନରାବୃତ୍ତି ହେତୁ ଏସବୁ ପଦମାନଙ୍କରେ ଅନୁପ୍ରାସ ଅଳଙ୍କାର ହେଲା । ଏଥି

ଅନୁପ୍ରାସ ୫ ଭାଗରେ ବିଭକ୍ତ । (୧) ବୃତ୍ତ୍ୟାନୁପ୍ରାସ (୨) ଛେକା-ନୁପ୍ରାସ (୩) ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସ (୪) ଅନ୍ତ୍ୟାନୁପ୍ରାସ ଏବ (୫) ଲାଟ୍ୟାନୁପ୍ରାସ ।

## ବୃତ୍ତ୍ୟାନୁପ୍ରାସ :—

ଯେଉଁଠାରେ ଅନେକ ବ୍ୟଞ୍ଜନବର୍ଣ୍ଣ ବା ଗୋଟିଏ ବ୍ୟଞ୍ଜନ ବର୍ଣ୍ଣର ବହୁବାର ଆବୃତ୍ତି ହୋଇଥାଏ, ସେଠାରେ ବୃତ୍ତ୍ୟନୁପ୍ରାସ ହୋଇଥାଏ । ପ୍ରକୃତରେ ପ୍ରତ୍ୟେକ ଅନୁପ୍ରାସହିଁ ବୃତ୍ତ୍ୟନୁପ୍ରାସର ଅନ୍ତର୍ଗତ । କାରଣ ବ୍ୟଞ୍ଜନ ବର୍ଣ୍ଣର ଆବୃତ୍ତି ମାତ୍ରେହିଁ ଅନୁପ୍ରାସର ପ୍ରାଣ । ଅନୁପ୍ରାସ ସହିତ ଏବ ଯେଉଁ 'ବୃତ୍ତି' ଆବୃ-ତ୍ତିକୁ କହନ୍ତି, ତାହାର ପ୍ରୟୋଗ ପ୍ରଥମେ ଅଷ୍ଟମ ଶତାବ୍ଦୀରେ ଆଳଙ୍କାରିକ ଉଦ୍ଭଟଙ୍କ ଦ୍ୱାରା ହୋଇଥିଲା । ବୃତ୍ତ୍ୟନୁପ୍ରାସ ସମ୍ପର୍କରେ ମୁଖ୍ୟତଃ ୪ଟି ବିଷୟ ପ୍ରଣିଧାନ ଯୋଗ୍ୟ ।

(୧) ଗୋଟିଏ ବ୍ୟଞ୍ଜନବର୍ଣ୍ଣର ଥରେମାତ୍ର ଆବୃତ୍ତି ।
(୨) ଏକ ବ୍ୟଞ୍ଜନବର୍ଣ୍ଣର ବହୁବାର ଆବୃତ୍ତି ।
(୩) ଅନେକ ବ୍ୟଞ୍ଜନବର୍ଣ୍ଣର କେବଳ ସ୍ୱରୂପତଃ ଆବୃତ୍ତି ।
(୪) ଅନେକ ବ୍ୟଞ୍ଜନବର୍ଣ୍ଣର ସ୍ୱରୂପ ସାଦୃଶ୍ୟ ଏବ କ୍ରମ ସାଦୃଶ୍ୟ ଆବୃତ୍ତି ।

ନିମ୍ନୋକ୍ତ ଉଦାହରଣରୁ ଉକ୍ତ ଅନୁପ୍ରାସର ପରିଚୟ ମିଳିପାରେ ।

(କ) ଲୁଣି ମଣିଲଣି ସୁଧା ଝରକୁ, ଶୁଣି ତା ମଧୁର ବଂଶୀ ସ୍ୱନକୁ
( ଭବସୁଧା )

ଏଠାରେ 'ଲ' ଓ 'ଣ'ର ପୁନଃ ପୁନଃ ଆବୃତ୍ତି ହୋଇଛି ।

(ଖ) ମଙ୍ଗଳେ ଅଚଳ ଉଷା     ଶରତ ଗଗନ ଦୃଶା
ଜାନକୀ ଦର୍ଶନ ତୃଷା ହୃଦେ ମୋ ବଢ଼ । (ତପସ୍ୱିନୀ)

ଉକ୍ତ ଉଦାହରଣରେ 'ଷ' ବ୍ୟଞ୍ଜନବର୍ଣ୍ଣଟି ବାରମ୍ବାର ଆବୃତ୍ତି ହୋଇଛି ।

(ଗ) ଦୂର ଝରନାଦ ଝଙ୍କାର ଝଙ୍କାର
କରେ ଝିଣିଝିଙ୍କା ତ୍ରିଦିବ ତ୍ରିପୁର । (ଚିଲିକା)

ଏଠାରେ 'ଝ' 'ର' ପୁନଃ ପୁନଃ ଆବୃତ୍ତି ହୋଇଛି ।

## ଛେକାନୁପ୍ରାସ :—

ଯେଉଁଠାରେ ଏକାଧିକ ବ୍ୟଞ୍ଜନବର୍ଣ୍ଣ ପର୍ଯ୍ୟାୟ କ୍ରମେ ଦୁଇବାର ଉଚ୍ଚାରିତ ହୋଇଥାଏ, ସେଠାରେ ଛେକାନୁପ୍ରାସ ହୁଏ । ଏକ ବ୍ୟଞ୍ଜନବର୍ଣ୍ଣର ପୁନରାବୃତ୍ତିରେ ଛେକାନୁପ୍ରାସ ହୁଏ ନାହିଁ ।

ଉଦାହରଣ :—

ଏହିକାଳେ ଦୃଷ୍ଟି ନିକଟେ     ବାଳା ବନ୍ଧ ବଦନେ
ଚପଳ ଚପଳ ସ୍ମରଣୁ     ଯୈଥି ବନ୍ଧୁ କ୍ଷଣେ ।
(ଚନ୍ଦ୍ରଭାଗା)

(ଖ) କର ଚଳିତ ବଚାନ୍ତି     ମୁକ୍ତାହାର ଉପହାରି
ଏତାକି କାଖ ବାହୁଡ଼ାଇ ଆଗମନେ ବଢ଼ି
(ଜଳ କଣ୍ଠ) କଣ୍ଠେ ଲମ୍ବଳ
ଦରଶନ ହୋଇ ସତ, ସତ ଯାଉଛି । (ତପସ୍ୱିନୀ)

(ଗ) ରଥ ଶ୍ରୀମୁଖ କରେ     ଦୀପଦାନ କାର୍ତ୍ତିକରେ
ପ୍ରଦୀପରେ ଧ୍ୟାନ ମଗନ ହେତୁ ନ କରେ ।
ମିଳେଣ କି ସେ ଆନନ୍ଦ କରେ     ଉତ୍ତମା ଧାମ ଅଙ୍କରେ
ବସେ କି ସେ ପଲ୍ଲଙ୍କରେ କି ଧ୍ୟାନ କରେ ।

ମେଘ ଥିଲେ ଶଙ୍କରେ

ସେ ଫଳୁ ଧର ଉବଜ ଶ୍ରୀଫଳ କରେ । (ପ୍ରେଃ ସୁଃ)

ରେଖାଙ୍କିତ ବର୍ଣ୍ଣମାନଙ୍କର ପର୍ଯ୍ୟାୟକ୍ରମେ ଆବୃତ୍ତି ହେତୁ ଛେକାନୁପ୍ରାସ ହେଲା ।

## ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସ :—

ପଦର ଆଦ୍ୟ ଓ ପ୍ରାନ୍ତର ଏକ ପ୍ରକାର ବର୍ଣ୍ଣର ଉଚ୍ଚାରଣ ହେଲେ ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସ ହୁଏ । ଏ ପ୍ରକାର ଅନୁପ୍ରାସର ଉଦାହରଣ ପ୍ରାଚୀନ କାବ୍ୟ; ଯଥା ଲାବଣ୍ୟବତୀ, ରସ କଲ୍ଲୋଳ ଓ ରସ ରତ୍ନାକରରେ ଦେଖାଯାଏ ।

ଉଦାହରଣ :—

(କ) ରମ୍ଭାଲେ ସେ ଜଙ୍ଘ ବଢ଼ାଇ ଆସି ଏକ ଭ୍ରମର
ରମଣୀ ମୁଖରେ ବସନ୍ତେ ଝାଡ଼ୁ ଭଜିଲ ଶିର
ରଙ୍ଗଃ ପୂର୍ଣ୍ଣ ପୁଞ୍ଜ କୁସୁମ ମୂଢ଼ ନୁହେଁ ଭ୍ରମର
ରଖ ଲେଖେ ମୋତେ ବନ୍ଧର୍ଥେ କିମ୍ବା କରୁ ଅଧର
(ରସ ରତ୍ନାକର)

(ଖ) ପଡଙ୍ଗ ଉଡ଼ୁଥାନେ ଏକେଣ ଉଡ଼ୁଥିବ ପତଙ୍ଗ
ନବରଙ୍ଗ କାନ୍ଧଣରେ କଲେ ନବରଙ୍ଗ ।
(ବସନ୍ତ ବାସରେ)

(ଗ) କମଳ ଦେବୀ କମଳା ପ୍ରାଣ ନାୟକ
କଳା ମହୀତଳେ ଲୀଳା ନର ଅନେକ
କଲେ ଇଚ୍ଛା ମନେ ଦେଖିବା କାଂଶ ଅନ୍ତକ
କହିବା ଇଚ୍ଛାୟ ମସ୍ତିଷ୍କର ଅନେକ ।
(ରସ କଲ୍ଲୋଳ)

ରେଖାଙ୍କିତ ବର୍ଣ୍ଣ ଓ ଶବ୍ଦମାନଙ୍କର ଆଦ୍ୟ ଓ ପ୍ରାନ୍ତରେ ଆବୃତ୍ତି ହେତୁ ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସ ହେଲା ।

## ଅନ୍ତ୍ୟାନୁପ୍ରାସ :—

ପୂର୍ଣ୍ଣ ମିତାକ୍ଷର ଚରଣରେ ଅନ୍ତ୍ୟସ୍ଥ ବର୍ଣ୍ଣର ଅନୁପ୍ରାସ ହୋଇଲେ ଅନ୍ତ୍ୟାନୁପ୍ରାସ ଅଲଙ୍କାର ହୁଏ ।

ଉଦାହରଣ :—

(କ) ସ୍ନିଗ୍ଧ ରୂପ ତୋର ଶଶୀ ଉଲ୍ଲାସକ (ଅକ)
ସୁମଧୁର ଚର୍ଚ୍ଚିତ ସ୍ୱରର ଦ୍ୟୋତକ (ଅକ)
( ଚିଲିକା )

(ଖ) ଉଜ୍ଜ୍ୱଳ କମଳା ବିଳାସ ଦୀର୍ଘିକା (ଇକା)
ମଞ୍ଜୁଳ ମାଳତୀ ମାଳାନ୍ତୁ ଚୁଲିକା (ଇକା )
(ଚିଲିକା)

## ଲାଟାନୁପ୍ରାସ :—

ଯେଉଁଠାରେ ପୁନରୁକ୍ତ ପଦଗୁଡ଼ିକ ଭିନ୍ନ ଭିନ୍ନ ଅର୍ଥର ବା ଅଭିପ୍ରାୟର ପ୍ରକାଶକ ହୋଇଥାନ୍ତି, ସେଠାରେ ଲାଟାନୁପ୍ରାସ ହୁଏ । ଏହା ଗୋଟିଏ ପଦଗତ ଅନୁପ୍ରାସ ।

ଉଦାହରଣ :—

(କ) ଭଙ୍ଗୀ ଝମପୁରେ କୃଷ୍ଣ ଗଣ୍ଡିଆ
କାହା କଟୀଛିତ ଦେଖି ମାଟିଆ
ଭୋଳନ୍ତି ବନ୍ଧୁ ମୁଁ ଛୋଡ଼ ଚେଟିଆ
ପାଣି ଆଣିବାକୁ ମୋହନ ଘଟିଆ
କୃଷ୍ଣ ଗୋପୀ ହୋଇ ଠିଆ ହେ

ବଦଗୋଧ ଚନ୍ଦ୍ରାମଣି)

ରେଖାଙ୍କିତ ବର୍ଣ୍ଣ ସମୂହର ପୁନରୁକ୍ତିରେ ଭିନ୍ନ ଭିନ୍ନ ଅର୍ଥ ଓ ଅଭିପ୍ରାୟର ସୂଚନା ମିଳୁଥିବାରୁ ଲାଟାନୁପ୍ରାସ ଅଳଙ୍କାର ହେଲା ।

## ଶ୍ଳେଷ

ଯଦି ପଦ ବା ବାକ୍ୟ ମଧ୍ୟରେ ଗୋଟିଏ ଯେଉଁ ଶବ୍ଦ ମାତ୍ର ବ୍ୟବହୃତ ହୋଇ ଭିନ୍ନ ଭିନ୍ନ ଅର୍ଥର ଦ୍ୟୋତକ ହୁଏ ତାହାହେଲେ ସେଠାରେ ଶ୍ଳେଷାଳଙ୍କାର ହୁଏ । ଏହି ଶ୍ଳେଷ ଅଳଙ୍କାରକୁ କେତେକ ଯେ ଶ୍ଳେଷରୂପେ ଅଭିହିତ କରିଥାନ୍ତି । ଏହା ଦୁଇ ପ୍ରକାର । ସଭଙ୍ଗ ଶ୍ଳେଷ ଓ ଅଭଙ୍ଗ ଶ୍ଳେଷ ।

ସଭଙ୍ଗ :— ଶବ୍ଦକୁ ଭାଙ୍ଗି ଭିନ୍ନ ଭିନ୍ନ ଅର୍ଥ କଲେ ।

ଅଭଙ୍ଗ :— ଶବ୍ଦକୁ ନ ଭାଙ୍ଗି ଭିନ୍ନ ଅର୍ଥ ପ୍ରକାଶ କଲେ ।

ଯଥା :— ସାଧିବ ଏଥକୁ ଏକା ଭୀମ ପରାକ୍ରମ

(କ) କୀଚକର ଅଭିଳାଷ ଧର୍ମତେ ତମେ ।
ଏ ରାଜ୍ୟରେ ନାହିଁ ତବ ଆନ ପ୍ରତିକାର
ଦ୍ୱିତୀୟ ସ୍ୱାମୀକି ଭଜ ଏ ଅମ୍ଭ ବଗ୍ରର ।
(କୀଚକ ବଧ)

ବିଶ୍ଳେଷଣ :—

ପାଣ୍ଡବମାନଙ୍କର ଅଜ୍ଞାତବାସ ଅବସ୍ଥାରେ ବିରାଟ ପୁରରେ କୀଚକ ସୈରିନ୍ଧ୍ରୀଙ୍କ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କୁ ଭୋଗ କରିବାକୁ ଇଚ୍ଛା ପ୍ରକାଶ କରି ବ୍ୟବସ୍ଥା କଲା । ଦାସୀଦ୍ୱାରା ତାଙ୍କର ଅଭିମତ ନେଉଥିଲା । ସୈରିନ୍ଧ୍ରୀ କହନ୍ତି

ରାଜାଙ୍କ ପାଖରେ ଗୁଡାଶ୍ରୀ ରହିଲେ । କିନ୍ତୁ କିଛି ଫଳ ହେଲା ନାହିଁ । ଶେଷରେ ସୈରନ୍ଧ୍ରୀ ଧର୍ମରାଜ ଯୁଧିଷ୍ଠିରଙ୍କ ପାଖରୁ ପରାମର୍ଶ ନେଲେ ଓ ଏ ଦୁର୍ଦ୍ଦଶାରୁ ରକ୍ଷା ପାଇବା ପାଇଁ ସାହାଯ୍ୟ ଚାହିଁଲେ । ଯୁଧିଷ୍ଠିର ସୈରନ୍ଧ୍ରୀଙ୍କୁ ପରାମର୍ଶ ଦେବା ଛଳରେ ଏହି ଶ୍ଳେଷପୂର୍ଣ୍ଣ ପଦଟି ପ୍ରକାଶ କରିଥିଲେ । ମୂଳତଃ ଏହାର ଅର୍ଥରୁ ମନେହୁଏ ଯେ କୀଚକର ଅଭିଳାଷ ଯେ କୌଣସି ମତେ ଭଗବାନ ବଳରେ ସାଧ୍ୟ ହେବ । ଶକ୍ତି ପ୍ରୟୋଗ କରି କୀଚକ ତାର ଅଭିଳାଷ ପୂର୍ଣ୍ଣ କରିବ । ଏତଦ୍‌ଭିନ୍ନ ଏହାର ଅନ୍ୟ କିଛି ପ୍ରତିକାର ନାହିଁ । ତେଣୁ ହେ ସୈରନ୍ଧ୍ରୀ, ତୁମେ ଦ୍ୱିତୀୟ ସ୍ୱାମୀ ଅର୍ଥାତ୍ କୀଚକକୁ ବରଣ କର । ଏହା ହିଁ ଆମ୍ଭର ଅଥବା ଯୁଧିଷ୍ଠିରଙ୍କର ବଗୂର । ଏଠାରେ ଅଭଙ୍ଗ ଶ୍ଳେଷ । "ଦ୍ୱିତୀୟ ସ୍ୱାମିକୁଂ ଭଜ" ରେ ଅଭଙ୍ଗ ଶ୍ଳେଷର ସୂଚନା ମିଳେ ।

କିନ୍ତୁ ଦ୍ୱିତୀୟ ଅର୍ଥରୁ ପ୍ରକାଶ ପାଏ ଯେ, କୀଚକର ସମୁଚିତ କର୍ମଫଳ ଭୀମର ପରାକ୍ରମ ହିଁ ପ୍ରଦାନ କରିବ । ଏତଦ୍‌ଭିନ୍ନ ଅନ୍ୟ କୌଣସି ପ୍ରତିକାର ଏ ରାଜ୍ୟରେ ସୈରନ୍ଧ୍ରୀ ପକ୍ଷରେ ଅନୁକୂଳ ନୁହେଁ । ତେଣୁ ହେ ସୈରନ୍ଧ୍ରୀ, ତୁମେ ଦ୍ୱିତୀୟ ସ୍ୱାମୀ ଅର୍ଥାତ୍ ଭୀମକୁ ପ୍ରାର୍ଥନା କର । ସେହି ହିଁ ତୁମକୁ ରକ୍ଷା କରିବେ । ଏହା ଯୁଧିଷ୍ଠିରଙ୍କର ବଗୂର । ଏଥିରୁ ସଭଙ୍ଗ ଶ୍ଳେଷର ସୂଚନା ମିଳେ ।

(ଖ) ବାବୁ ନାଳଣିଶ୍ରୀ ଦାନ ଯୋଗ୍ୟ ଯୋଷାକୁ
ଛଡ଼ର କାନନ କର ଆଲିଙ୍ଗନକୁ ।

**ବିଶ୍ଳେଷଣ :—**

ପ୍ରଥମ ଅର୍ଥରେ ହେ ଲକ୍ଷ୍ମଣ, ଏହି ସ୍ତ୍ରୀକୁ ନାକଟିସ୍ତ ଅର୍ଥାତ୍ ସ୍ୱର୍ଗୀୟ ସୁଖ ପ୍ରଦାନ କରିବା ବିଧେୟ । ଏହାଙ୍କୁ ଆଲିଙ୍ଗନ କରି କାନନରେ ସାନନ୍ଦେ ବିହାର କର ।

୨ୟ ଅର୍ଥରେ— ହେ ଲକ୍ଷ୍ମଣ, ଏହାର ନାକଟିସ୍ତ ଅର୍ଥାତ୍ ନାକର ସୌନ୍ଦର୍ଯ୍ୟକୁ ଦାନ ଅର୍ଥାତ୍ ଛେଦନ କରିବା ଉଚିତ୍ । ଏହାର କାନ ସହିତ— ହରଣ କର ବା କାଟିଦିଅ । ନ କର ଆଲିଙ୍ଗନ ଅର୍ଥାତ୍ ଆଲିଙ୍ଗନ କରନାହିଁ । ପ୍ରଥମ ଅର୍ଥରେ ଅଭଙ୍ଗ ଶ୍ଳେଷ ଓ ଦ୍ୱିତୀୟ ଅର୍ଥରୁ ସଭଙ୍ଗ ଶ୍ଳେଷର ସୂଚନା ମିଳୁଛି ।

**ବକ୍ରୋକ୍ତି —**

କୌଣସି ବକ୍ତାଙ୍କର ଉକ୍ତିକରି, ଅଭିପ୍ରେତ ଅର୍ଥକୁ ଅନ୍ୟଜଣେ ଭିନ୍ନ ଅର୍ଥରେ ଗ୍ରହଣ କଲେ ବକ୍ରୋକ୍ତି ଅଳଙ୍କାର ହୁଏ ।

ଶ୍ଳେଷ ଓ କାକୁ ଭେଦରେ ବକ୍ରୋକ୍ତି ଦୁଇଶ୍ରେଣୀର ।

**ଶ୍ଳେଷ ବକ୍ରୋକ୍ତି :—**

ସାଧାରଣତଃ ଏକ ଶବ୍ଦର ନାନା ଅର୍ଥ ପ୍ରକାଶ ପାଇଲେ ଶ୍ଳେଷ ହୁଏ । ତେଣୁ ଏହି ଜାତୀୟ ଶବ୍ଦର ଅର୍ଥଗତ ବୈଶିଷ୍ଟ୍ୟରେ ନିର୍ଭର କରି ଯେଉଁ ଅଳଙ୍କାର ହୁଏ, ତାହା ଶ୍ଳେଷ ବକ୍ରୋକ୍ତି ।

ଯଥା :— ପାଣିଗ୍ରହଣରୁ ତୁଟିଅଛୁ କାଲି
ସୁଖରେ ତୁମ୍ଭେ ଉଦାର
ବାହୁଲ୍ୟ ମାତର କହୁଅଛୁ ଆମ୍ଭେ
ମୃନାକନ୍ୟା ହେ ଉଦାର ।

ଏଥିରେ ମୁନିକନ୍ୟା ମାନଙ୍କର 'ନେତ୍ର ଜଦାର' ଶବ୍ଦଟିରେ ଅର୍ଥ ବୈଚିତ୍ର୍ୟ ଦେଖାଯାଏ ।

(୧) ନେତ୍ର, ଜୁଦାର = ନେତ୍ର ; ଉଦାର ।

(୨) ନେତ୍ରଜଦାର = ନେତ୍ରଜଦାର (ସ୍ତ୍ରୀ)

**କାକୁ ବକ୍ରୋକ୍ତି :—**

କାକୁର ଅନ୍ୟାର୍ଥ ସ୍ୱରଭଙ୍ଗୀ । କଣ୍ଠ ସ୍ୱରର ପରିବର୍ତ୍ତନରେ କାକୁ ବକ୍ରୋକ୍ତି ହୁଏ ।

ଯଥା :— କ ନାହିଁ ଘରରେ ଶସ୍ୟାର ଭଣ୍ଡାର ।

କଣ୍ଠସ୍ୱର ପରିବର୍ତ୍ତନରେ —

ନାହିଁ କ ଘରରେ ଶସ୍ୟାର ଭଣ୍ଡାର ।

**ବକ୍ରୋକ୍ତି ଓ ଶ୍ଳେଷ :—**

ବକ୍ରୋକ୍ତିରେ ବକ୍ତାର ଅଭିପ୍ରେତ ଅର୍ଥ ଶ୍ରୋତା ନିକଟରେ ଭିନ୍ନ ଭାବରେ ଗୃହୀତ ହୋଇଥିବା ବେଳେ ଶ୍ଳେଷ ଅଳଙ୍କାରରେ ଏକ ଶବ୍ଦର ବହୁ ଅର୍ଥ ସଂଶ୍ଳେଷିତ ହୋଇଥାଏ । ବକ୍ରୋକ୍ତି ବ୍ୟାପକ । ଏହି ବକ୍ରୋକ୍ତି ଭିତରେ ଶ୍ଳେଷ ଗୁଣର ମଧ୍ୟ ପରିଚୟ ମିଳିଥାଏ । ବକ୍ରୋକ୍ତି କାବ୍ୟର ଜୀବନ— ଶ୍ଳେଷ ଏକ ଅଳଙ୍କାର ମାତ୍ର । ଉଭୟଙ୍କର ବୈଶିଷ୍ଟ୍ୟ କିନ୍ତୁ ଅର୍ଥର ଚମତ୍କାରିତା ଉପରେ ନିର୍ଭର କରେ । ବୈଦଗ୍ଧ ଭଙ୍ଗୀ ଭଣିତ ବକ୍ରୋକ୍ତିର ବୈଶିଷ୍ଟ୍ୟ । ଶବ୍ଦ ଓ ଅର୍ଥର ପ୍ରୟୋଗ ପଟୁତା ପ୍ରତ୍ୟେକଙ୍କର ସ୍ୱାଭାବିକ ଲକ୍ଷଣ ।

**ଯମକ :—**

ସାର୍ଥକ (ଅର୍ଥଯୁକ୍ତ) ବାକ୍ୟ ମଧ୍ୟରେ ଭିନ୍ନାର୍ଥ ବାଚକ ଶବ୍ଦର ପୁନରାବୃତ୍ତିକୁ ଯମକ ଅଳଙ୍କାର କହନ୍ତି । ବାକ୍ୟ ବା

ପଦରେ ବ୍ୟବହୃତ ଶବ୍ଦ ସାର୍ଥକ ହୋଇପାରେ ବା ନିରର୍ଥକ ହୋଇପାରେ । କିନ୍ତୁ ପୁନଃପୁନଃ ଆବୃତ୍ତି ହେବା ଉଚିତ୍ । ଏହି ଆବୃତ୍ତି ପୁଣି ନିର୍ଦ୍ଦିଷ୍ଟ କ୍ରମ ରକ୍ଷାକରି ଧ୍ୱନିତ ହେବ । ନିର୍ଦ୍ଦିଷ୍ଟ କ୍ରମ ଅନେକର 'ରାଧା' ପଦ 'ଧାରା' ରୂପେ ଧ୍ୱନିତ ହୁଏ, ଅର୍ଥାତ୍ ବର୍ଣ୍ଣର ବିନ୍ୟାସ କ୍ରମ ପରିବର୍ତ୍ତିତ ହୁଏ ତାହାହେଲେ ଯମକ ହେବନାହିଁ । ପୁଣି ସାର୍ଥକ ଓ ନିରର୍ଥକ ଶବ୍ଦ ଥାଇ ଯମକ ହେବ । ଏହାର ତାତ୍ପର୍ଯ୍ୟ ହେଉଛି ବାକ୍ୟରେ ବ୍ୟବହୃତ ବର୍ଣ୍ଣ ସମୂହର ଅର୍ଥ ଥାଇବାରେ ନ ଥାଇ ପାରେ କିମ୍ବା ଗୋଟିଏ ସାର୍ଥକ ହୋଇ ଅନ୍ୟଟି ନିରର୍ଥକ ହୋଇପାରେ । ହେଲେ ବି ତାହା ଯମକ ହୁଏ । ଯମକ ପାଇଁ କେବଳ ଭିନ୍ନାର୍ଥବୋଧକ ଶବ୍ଦର ପୁନରାବୃତ୍ତି ଆବଶ୍ୟକ । ଏହା ଅନେକ ପ୍ରକାର । ଯଥା :— ଆଦ୍ୟ, ମଧ୍ୟ, ପ୍ରାନ୍ତ, ମାଳ, ଓ ସିଂହଯମକ ଇତ୍ୟାଦି ।

**ଆଦ୍ୟ ଯମକ :—**

ବରଜୀବରପେ ଦେଇ ମାନିନୀ ।
ବରଜା ବରଜେ ଅନେମଧ ଗ୍ରାସ ।
ଦେହେ ମହାକାଳୀ ରଙ୍ଗ ଲଗାଇ
ଗ୍ରାମ ଶୂକର କି ହୋଇବ ଗାଈ ।

( କବିସୂର୍ଯ୍ୟ )

**ମଧ୍ୟ ଯମକ :—**

(କ) ହେଲେ ଶୂନ୍ୟ ଅଙ୍କ ଶୂନ୍ୟ ଯୋଗେ ଅଙ୍କ
ପଞ୍ଚ ଦ୍ୱିଗୁଣ ଦ୍ୱିତ ଗୁଣ

(ଖ) ନବୀନ ଜୀମୂତ ଜୀମୂତ ସୁତା କିଏ ଭଜିବ
ଏ ନୀଳ କମଳ କମଳି ବଦନ ବନ୍ଧୁ ହେମନ୍ତ ।

(ଲାବଣ୍ୟବତୀ)

**ପ୍ରାନ୍ତ ଯମକ :—**

(କ) କେତେ ସ୍ପଷ୍ଟ ପଡ଼ େବ୍ରାହ୍ମଣୀ <u>ସଲିଳେ</u>
ଖାଳ ପୃଷ୍ଠେ ବସି ଚଳିଲେ <u>ସଲୀଳେ</u>

(ଗଙ୍ଗାଧର ବେଦବ୍ୟାସ)

(ଖ) ନକ୍ଷତ୍ରଶ୍ରେଣି କ୍ଷେପଣେ ତୋହର <u>ସଲିଳେ</u>
ଦ୍ୱିଜବର ଉଷ୍ଣ ଜଠିଲ <u>ସଲୀଳେ</u> ।

(ରାଧାନାଥ ଶଳଭା)

**ମାଳ ଯମକ :—**

ଦେଖରେ ନଳିନ ! ନଳିନୀ ନଳିନୀରେ ପୂରିତ ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଶୋଭିତ ।

(ଲାବଣ୍ୟବତୀ)

**ସର୍ବ ଯମକ :—**

(କ) ଅଧ୍ୱ ମକରଁ ତାପଁ ନାଶେ ଶୋଭା ସାରସ ଚଢେ
ଅ·ହ୍ୱମ-ଙ୍କର ତାପ ନାଶେ ଶୋଭା ସାରସ ଚଢେ ।

(ଖ) ବାଳିକା ଜନକ କାନ୍ତି କନକ କନକ
ବାଳିକା କନକ କାନ୍ତି କନକ ଜନକ ।

## ପୁନରୁକ୍ତ ବଦାଭାସ

ଯେଉଁଠାରେ ଏକାର୍ଥବୋଧକ ଭିନ୍ନାକୃତ ଶବ୍ଦମାନଙ୍କର ଅର୍ଥ ପୁନରୁକ୍ତ ଜଣାପଡ଼ାଏ, କିନ୍ତୁ ପ୍ରକୃତରେ ପୁନରୁକ୍ତ ନ ହୋଇ ଭିନ୍ନାର୍ଥ ପ୍ରକାଶ କରେ, ସେଠାରେ ପୁନରୁକ୍ତ ବଦାଭାସ ଅଳଙ୍କାର ହୁଏ ।

ଯଥା :— ପତି କାନ୍ତ ପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶିଲେ ରମା ଶିରୋମଣି ।

ଏଠାରେ ପତି, କାନ୍ତ, ପ୍ରିୟ ସମୂହ ଏକାର୍ଥ ବୋଧକ ଶବ୍ଦ ଭଳାଃକୃତ, ଅର୍ଥ ପୁନରୁକ୍ତ ଦୋଷପରି ଜଣାପଡ଼ୁଛି । ବାସ୍ତବରେ ତାହା ନୁହେଁ । ସେ ଶବ୍ଦଙ୍କର ଅର୍ଥ ଭିନ୍ନ । ଯଥା :—
ପତି — ସ୍ୱାମୀ, କାନ୍ତ — ମନୋହର, ପ୍ରିୟ — ମଧୁର ।
ତେଣୁ ପୁନରୁକ୍ତ ବଦାଭାସ ।

## ଅର୍ଥାଳଙ୍କାର

ଯେଉଁ ଅଳଙ୍କାର ଅର୍ଥର ଗୌରବ ପ୍ରକାଶକ ଓ ସୌନ୍ଦର୍ଯ୍ୟ ବର୍ଦ୍ଧକ ତାହାକୁ ଅର୍ଥାଳଙ୍କାର ନାମରେ ଅଭିହିତ । ଏହା ବହୁବିଧ । ଗୁଣ ଓ ଲକ୍ଷଣ ଦୃଷ୍ଟିରୁ ଏ ଗୁଡ଼ିକର ଶ୍ରେଣୀ ବିଭାଗ ବହୁ ପ୍ରକାରରେ କରାଯାଇଛି । ସେଥିରୁ ସାଦୃଶ୍ୟ ମୂଳକ, ବିରୋଧ ମୂଳକ, ଗୂଢ଼ାର୍ଥ ପ୍ରତୀତି ମୂଳକ ଅଳଙ୍କାରମାନ ଏହି ଅର୍ଥାଳଙ୍କାର ପର୍ଯ୍ୟାୟର ଅନ୍ତର୍ଭୁକ୍ତ ।

## ସାଦୃଶ୍ୟ ମୂଳକ

ଏହା ଦୁଇ ବସ୍ତୁର ସାଦୃଶ୍ୟ ବା ସାମ୍ୟକୁ ନେଇ ପ୍ରତିଷ୍ଠିତ ଆକାର ପ୍ରକାରରେ ବସ୍ତୁ ଦୁଇଟି ହୁଏତ ଭିନ୍ନ ହୋଇ ପାରନ୍ତି । କିନ୍ତୁ କବି ଦୃଷ୍ଟିରେ ଏହି ଦୁଇ ବସ୍ତୁ ମଧ୍ୟରେ ଥିବା ଧର୍ମ ଏମାନଙ୍କୁ ସାମ୍ୟ ସୂତ୍ରରେ ଏକତ୍ରିତ କରେ । କବି ବସ୍ତୁର ଯେଉଁ ଧର୍ମଗତ ଆବିଷ୍କାର କରେ ସେହି ସାମ୍ୟର ପ୍ରେରଣାରେ ଜନ୍ମ ନିଏ ସାଦୃଶ୍ୟମୂଳକ ଅଳଙ୍କାର । ସାଦୃଶ୍ୟ, ସାମ୍ୟ, ସାରୂପ୍ୟ, ସାଧର୍ମ୍ୟ ପ୍ରଭୃତି ଏକାର୍ଥ ବୋଧକ ଶବ୍ଦ । ଏହା ବହୁବିଧ, ଉପମା, ରୂପକ ଉତ୍ପ୍ରେକ୍ଷା, ବ୍ୟତିରେକ, ଦୃଷ୍ଟାନ୍ତ ଆଦି ଅନେକ ଏହି ଶ୍ରେଣୀଗତ । ଏ ଗୁଡ଼ିକ କବି ଓ ପାଠକ ଉଭୟଙ୍କ ନିକଟରେ ଅତି ପ୍ରିୟ ।

କାରଣ ଏହା ମଧ୍ୟରେ ଥିବା ଏମାନଙ୍କର ଶବ୍ଦଧର୍ମ ଭାବକୁ ରଙ୍ଗିମନ୍ତ କରେ । କାବ୍ୟ ଜଗତ ଏକ ବଡ଼ ଚିତ୍ରଶାଳାର ରୂପ ଗ୍ରହଣ କରେ । ଯେଉଁ କାବ୍ୟର ଶବ୍ଦ ଧର୍ମିତା ବେଶୀ ତାହା ପରମ ଉପଭୋଗ୍ୟ ।

ତତ୍ତ୍ୱର ଦୃଷ୍ଟିକୋଣରୁ ସାଦୃଶ୍ୟ ବା ସାଧର୍ମ୍ୟର ବର୍ଗୀକରଣ କରାଯାଇଥାଏ । ସାଦୃଶ୍ୟ ଯେହେତୁ ବସ୍ତୁ ଦୁଇଟି ମଧ୍ୟରେ ସୀମିତ ତେଣୁ ମୁଖ୍ୟତଃ (୧) ବସ୍ତୁ ଦୁଇଟିର ସମାନ ମୂଲ୍ୟ ସ୍ୱୀକାର କରି (୨) ବସ୍ତୁଦ୍ୱୟର ଅଭେଦ କଳ୍ପନା କରି କମ୍ବା (୩) ବସ୍ତୁ ଦୁଇଟିର ଭେଦକୁ ପ୍ରାଧାନ୍ୟ ପ୍ରଦାନ କରି — ସାଦୃଶ୍ୟ ବା ସାଧର୍ମ୍ୟର ବର୍ଗୀକରଣ କରାଯାଇଥାଏ । ଉପମା, ରୂପକ ଓ ବ୍ୟତିରେକ ଆଦି ଅଳଙ୍କାର ଯଥାକ୍ରମେ ଏହି ତିନ ପ୍ରକାର ପରିଣତ । ପୁଣି ସାଦୃଶ୍ୟ ବୋଧ ହୁଏ ଗୁଣ, ଅବସ୍ଥା ଓ କ୍ରିୟାର ମିଶ୍ରଣଗତ ଧର୍ମର ସାହାଯ୍ୟରେ । ଏହି ସାଦୃଶ୍ୟ ମୂଳକ ଅଳଙ୍କାର ଗୁଡ଼ିକ ଚାରୋଟି ଅଙ୍ଗକୁ ନେଇ ପରିପୁଷ୍ଟ । ସେ ଗୁଡ଼ିକ ମଧ୍ୟରେ ନିମ୍ନଲିଖିତ ଅଙ୍ଗ ଅନ୍ତର୍ଭୁକ୍ତ । (୧) ଯାହା ତୁଳନୀୟ ବସ୍ତୁ । (୨) ଯାହା ସଙ୍ଗେ ତୁଳନୀୟ । (୩) ଯେଉଁ ସାଧାରଣ ଧର୍ମଦ୍ୱାରା ତୁଳନା ସମ୍ଭବ । (୪) ତୁଳନାର ରୂପ । ଯାହାକୁ ତୁଳନା ଦିଆଯାଏ ତାହା **ଉପମେୟ** । ଯାହା ସଙ୍ଗେ ତୁଳନା କରାଯାଏ ତାହା **ଉପମାନ** । ଯେଉଁ ସମାନ ଗୁଣ ଦ୍ୱାରା ତୁଳନା ସମ୍ଭବ ତାହା **ସାଧାରଣ ଧର୍ମ** । ଯେଉଁ ଶବ୍ଦ ଏ ସବୁର ସମ୍ପର୍କ ବା ସଂଯୋଜକ ତାହା **ଉପମା ବାଚକ ଶବ୍ଦ** । ପରି, ତୁଲ୍ୟ, ସଦୃଶ, ପ୍ରାୟ, ଯଥା, ବାଜିପ୍ରାୟ, ମତ, ସମ, ଯେମିତ ଇତ୍ୟାଦି ଉପମା ବାଚକ ଶବ୍ଦ ।

ଉଦାହରଣ :— ସୁନ୍ଦର ମୁଖ ଚନ୍ଦ୍ର ସମ ।
ଏଠାରେ 'ମୁଖ' ଉପମେୟ, 'ଚନ୍ଦ୍ର' ଉପମାନ 'ସୌନ୍ଦର୍ଯ୍ୟ' ସାଧାରଣ ଧର୍ମ ଏବଂ 'ସମ' ଉପମା ବାଚକ ଶବ୍ଦ । ଏହିପରି ଯୁବାକାନ୍ତି ଯଥା ସ୍ୱର୍ଣ୍ଣ କନକାଂଶୁ" । ଏଠାରେ "ଯୁବା" 'ଉପମେୟ' "ସ୍ୱର୍ଣ୍ଣ" 'ଉପମାନ' 'କନକାଂଶୁତା" ବା ସୁନ୍ଦରତା ଏବ 'ସାଧାରଣ ଧର୍ମ 'ଯଥା' ଉପମା ବାଚକ ଶବ୍ଦ । ଏ ଗୁଡ଼ିକରେ ସାଦୃଶ୍ୟ ମୂଳକ ଅଳଙ୍କାରର ପ୍ରତ୍ୟେକ ଅଙ୍ଗର ତତ୍ତ୍ୱ ସ୍ପଷ୍ଟ । ଏ ସବୁ ଥାଇ ଯେଉଁ ଅଳଙ୍କାର ସୃଷ୍ଟି ହୁଏ ସେହି ନାମ ଧର୍ମୀ ଅଳଙ୍କାର ସାଦୃଶ୍ୟ ମୂଳକ ଅଳଙ୍କାର ସହିତ ଅନ୍ତର୍ଗତ ହୋଇଥାଏ । ଏହି ଶ୍ରେଣୀର ବହୁବିଧ ଅଳଙ୍କାର ଗୁଡ଼ିକର ବିଶେଷ ଆଲୋଚନା ପରବର୍ତ୍ତୀ ଅଧ୍ୟାୟରେ ଲିଖିତ ହେଉଛି ।

## ଉପମା

ଉପମାର ସାଧାରଣ ଅର୍ଥ ତୁଳନା । ବିଜାତୀୟ ବସ୍ତୁ ଦୁଇଟିର ଓ ସମାନ ଧର୍ମ ବୋଧକ ସାଦୃଶ୍ୟ କଥନକୁ ଉପମା ଅଳଙ୍କାର କୁହାଯାଏ । ସାଧାରଣ ଧର୍ମ ଥାଇ ଉପମାନ, ଉପମେୟର ତୁଳନା କରାଗଲେ ସେଠାରେ ମଧ୍ୟ ଉପମା ଅଳଙ୍କାର ହୋଇଥାଏ । ଏହା ତିନି ପ୍ରକାର— (୧) ପୂର୍ଣ୍ଣୋପମା (୨) ଲୁପ୍ତ-ଉପମା (୩) ମାଳୋପମା ।

ପୂର୍ଣ୍ଣଉପମା—ଯେଉଁଠାରେ ଉପମାନ, ଉପମେୟ, ଉପମାବାଚକ ଶବ୍ଦ ଓ ସାଧାରଣ ଧର୍ମର ସ୍ପଷ୍ଟ ଉଲ୍ଲେଖ ଥାଏ ସେଠାରେ ପୂର୍ଣ୍ଣୋପମା ହୁଏ ।

ଯଥା :— (କ) "ଖଣ୍ଡ ଖଣ୍ଡ ଧଳାମେଘ ସୁନୀଳ ଅମ୍ବରେ
ଭାସଇ ଫେଣ ଯଥା ନୀଳ ସମୁଦ୍ରରେ ।"

ଏଠାରେ 'ମେଘ' ଉପମେୟ, 'ବୋଇତ' ଉପମାନ, 'ଭାସିବ' ସାଧାରଣ ଧର୍ମ ଓ 'ତଥା' ଉପମା ବାଚକ ଶବ୍ଦ । ଏ ସବୁର ଉଲ୍ଲେଖ ଥିବାରୁ ଏଠାରେ ପୂର୍ଣ୍ଣୋପମା ହେଲା ।

(ଖ) ବାମନର ଚନ୍ଦ୍ର ପରିଏ ମୋହର ଦୁର୍ଲଭ ଏ ରଙ୍କବାଳା ।
କେତେଶ୍ରେୟେ ଗୁନ୍ଥିବ ଦୁର୍ଭାଗାର ସୂତ୍ରେ ଆକାଶ କୁସୁମମାଳା ।
( ଯଯାତି କେଶରୀ )

ଏଠାରେ 'ବାମନକୁ ଚନ୍ଦ୍ର' ଉପମାନ, 'ଯଯାତିକୁ ରଙ୍କବାଳା' ଉପମେୟ ; ଦୁର୍ଲଭତା' ସାଧାରଣ ଧର୍ମ । 'ପରିଏ' ଉପମାବାଚକ ଶବ୍ଦ । ଏ ସବୁର ସମାହାର ହେତୁ ଏହା ଗୋଟିଏ ପୂର୍ଣ୍ଣୋପମା ସେହିପରି :—

(ଗ) "ଥାଉଲ ହୋଇଛି ବାହୁଡ଼ି ନ ଜାଣି
ଶୋଭୁଛି ଶୋଭା ଅରଣ୍ୟ
ବାନ୍ଧିଛ ହୃଦୟ କୁରୁକ୍ଷେତ୍ରେ ତଥା
ଚକ୍ରବ୍ୟୂହ ଅଭିମନ୍ୟୁ ।"

**ଲୁପ୍ତୋପମା** — ଯେଉଁଠି ଉପମେୟ, ଉପମାନ, ସାଧାରଣ ଧର୍ମ ଓ ଉପମାବାଚକ ଶବ୍ଦ ମଧ୍ୟରୁ ଏକ ବା ଏକାଧିକ ଲୁପ୍ତ ହୋଇ ଥାଏ ସେଠାରେ ଲୁପ୍ତୋପମା ହୁଏ । ଯଥା :—

(କ) "ଲଲାଟ ଦିଶୁଛି ଲଲଟେ ତାର ସିନ୍ଦୂର ବିନ୍ଦୁ
ମୁଖ କମଳକୁ ହୋଇଛି ଯେସନେ ପୂର୍ଣ୍ଣିମା ଇନ୍ଦୁ ।"
(ତପସ୍ୱିନୀ)

ବିଶ୍ଳେଷଣ :— ସୀତାଙ୍କ ଲଲାଟରେ ସିନ୍ଦୂର ବିନ୍ଦୁ ଲଲାଟ ଦିଶୁଛି । କିନ୍ତୁ ବିରହ ବଧୂର ସୀତାଙ୍କ ମୁଖ ବିବର୍ଣ୍ଣ ହୋଇଛି । ଯେପରିକି ପୂର୍ଣ୍ଣଚନ୍ଦ୍ର ଲଳିତ ହେଲେହେଁ କମଳକୁ ପ୍ରସନ୍ନ କରିପାରେ ନାହିଁ ।

ଏଠାରେ ମୁଖକୁ କମଳ ଓ ସିନ୍ଦୂର ବିନ୍ଦୁକୁ ପୂର୍ଣ୍ଣଚନ୍ଦ୍ର ସହିତ ତୁଳନା କରାଯାଇଛି । ତେଣୁ ଏଠାରେ ଉପମେୟ, ଉପମାନ ଓ ଉପମା ବାଚକ ଶବ୍ଦ 'ଯେଉଁଭଳି' ଉପସ୍ଥିତ ଅଛନ୍ତି । କେବଳ ସାଧାରଣ ଧର୍ମ 'ରକ୍ତବର୍ଣ୍ଣତା' ଲୁପ୍ତ ଅଛି । ସ୍ପଷ୍ଟ ଭାବରେ ସାଧାରଣ ଧର୍ମ ପ୍ରକାଶ ପାଇନାହିଁ । କାରଣ କନକ ପୂର୍ଣ୍ଣିମା ଚନ୍ଦ୍ର ଥାଇ ଯୁକ୍ତ କମଳ ଯେପରି ସ୍ୱାମୀ ବିରହରେ ରକ୍ତବର୍ଣ୍ଣ ହୁଏ । ସେହିପରି ସୀତାଙ୍କ ଲଲାଟରେ କନକ ସିନ୍ଦୂର ବିନ୍ଦୁ ଥାଇ ମଧ୍ୟ ସ୍ୱାମୀ ବିରହ ଯୋଗୁଁ ତାଙ୍କ ମୁଖ କମଳ ରକ୍ତବର୍ଣ୍ଣ ଦିଶୁଛି । ଏଠାରେ ରକ୍ତବର୍ଣ୍ଣତା ସାଧାରଣ ଧର୍ମ ଅପ୍ରକାଶିତ ଥିବାରୁ ଲୁପ୍ତୋପମା ହୋଇଛି ।

(ଖ) ଯେବେ ନବଘନ ଶ୍ୟାମ ବଂଶୀସ୍ୱନ
କର୍ଣ୍ଣରେ ଥରେ ଶୁଣାଯିବ ॥ (ଚମ୍ପୂ ଥି)

ଅର୍ଥ :— ଯେବେ ନବଘନ ପରି ଶ୍ୟାମଳ ଅର୍ଥାତ୍ ନୂତନ ମେଘପରି ଶ୍ୟାମଳ ବର୍ଣ୍ଣଧାରୀ ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନ କର୍ଣ୍ଣରେ ଶୁଣାଯିବ । ଏଠାରେ ଶ୍ରୀକୃଷ୍ଣ-- ଉପମେୟ । କିନ୍ତୁ ଶ୍ରୀକୃଷ୍ଣଙ୍କ କଥା ବର୍ଣ୍ଣନା କରା ଯାଇନାହିଁ, ତେଣୁ 'ଲୁପ୍ତ । ସଦୃଶ ଉପମା ବାଚକ ଶବ୍ଦ ଲୁପ୍ତ, କାରଣ ନବଘନ ଦେହ ବୁଝାଉଛି । ମାତ୍ର 'ସଦୃଶ' ତୁଲ୍ୟ 'ପରି' ଇତ୍ୟାଦି ଉପମା ବାଚକ ଶବ୍ଦର ଉଲ୍ଲେଖ ନାହିଁ । ତେଣୁ ଲୁପ୍ତୋପମା ହୋଇଛି ।

**ମାଳୋପମା :**— ଉପମେୟ ଗୋଟିଏ । ମାତ୍ର ଉପମାନ ଅନେକ ଥିଲେ ମାଳୋପମା ହୁଏ ।

ଉଦାହରଣ :— (କ) ସୁନ୍ଦର ମଧୁର ବେନିଙ୍କ ମିଳନ
ଶୋଭି ଏତେଗ ଅଧା ସୌଭାଗ୍ୟ ଯେସନ

ଶଶୀ ସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା
ଶ୍ରୀପତି ସହିତେ ଲୋକମାତା ରମା ।
( ଚିଲିକା )

ବିଶ୍ଳେଷଣ :— ପଦ୍ମାବତୀ ପୁରୁଷୋତ୍ତମଙ୍କ ମିଳନ ଏଠାରେ ବର୍ଣ୍ଣନା କରାଯାଇଛି । ପଦ୍ମାବତୀ ପୁରୁଷୋତ୍ତମ ମିଳନ ଉପମେୟ ଏମାନଙ୍କ ମିଳନ, ଶୌର୍ଯ୍ୟ ସଙ୍ଗେ ସୌନ୍ଦର୍ଯ୍ୟ ପରି ; ଶଶୀ ସଙ୍ଗେ ଚନ୍ଦ୍ରମାର, ଶ୍ରୀପତି ସହ ଲୋକମାତାଙ୍କର, ସୁନ୍ଦର ସହ ମଧୁରର ମିଳନ ପରି ହୋଇଛି । ଗୋଟିଏ ଉପମେୟକୁ ଅନେକ ଉପମାନ ଦିଆ ଯାଇଥିବା ହେତୁ ମାଳୋପମା ହେଲା ।

(ଙ) ମିଶିଯାଏ ଯଥା ପ୍ରକୃତି ତାର ଭବ କରଣେ ।
ମିଶିଯାଏ ଯଥା ଜୀବାତ୍ମା ପରମାତ୍ମା ଚରଣେ
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।
(ଚନ୍ଦ୍ରଭାଗା)

ବିଶ୍ଳେଷଣ :— ଚନ୍ଦ୍ରଭାଗାର ନୀଳ ତରଙ୍ଗରେ ନିମଜ୍ଜିତ ହେବା ଗୋଟିଏ ଉପମେୟ । ଚନ୍ଦ୍ରଭାଗା ସମୁଦ୍ରର ନୀଳ ତରଙ୍ଗରେ ନିମଜ୍ଜିତ ହେଲେ— ଯେପରି ପ୍ରକୃତି ତାର ଭବ କରଣରେ, ଜୀବାତ୍ମା ପରମାତ୍ମାରେ, ଚପଳା ନୀଳ ଜଳଦରେ ନିମଜ୍ଜିତ ହୁଏ । ଅବଳା ଚନ୍ଦ୍ରଭାଗା ଉପମେୟ । ଅନ୍ୟ ସମସ୍ତେ ଉପମାନ — ଏକ ଉପମେୟ ପାଇଁ ଅନେକ ଉପମାନ ଥିବାରୁ ମାଳୋପମା ହୋଇଛି ।

# ରୂପକ

ଉପମେୟ ଓ ଉପମାନର ଅଭେଦ କଳ୍ପିତ ହେଲେ ରୂପକ ଅଳଙ୍କାର ହୁଏ । ଏହି ଅଭେଦ କଳ୍ପନାକୁ ଆରୋପ ଆଖ୍ୟା ଦିଆ ଯାଇଥାଏ । ବିଷୟ ବା ଉପମେୟ ଉପରେ ବିଷୟୀ ବା ଉପମାନର ଆରୋପ ହେଲେ ରୂପକ ହୁଏ । ଆରୋପ ଶବ୍ଦଟିର ଅର୍ଥ ହେଉଛି ଗୋଟିଏ ବସ୍ତୁ ଉପରେ ଅନ୍ୟ ଗୋଟିଏ ବସ୍ତୁ ଏପରି ଭାବେ ସ୍ଥାପିତ ହୁଏ ଯେ ପ୍ରଥମଟିକୁ ନିଜ ରୂପରେ ରୂପାୟିତ କରେ । ଏହି ରୂପାୟନ ହେତୁ ଦୁଇଟି ବିଜାତୀୟ ବସ୍ତୁ ଅଭିନ୍ନ ବା ଏକ ବୋଲି କଳ୍ପିତ ହୋଇଥାନ୍ତି । ଆରୋପ ଅର୍ଥ ସ୍ଥାପିତ ହେବା । ଅନ୍ୟ କଥାରେ କହିବାକୁ ଗଲେ ବସ୍ତୁତଃ ଉପମେୟ ଓ ଉପମାନ ଭିନ୍ନ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ଥିବା ସାମ୍ୟର ଅଧିକତା ଦେଖାଇବାକୁ ଯାଇଁ ଯେଉଁ କାଳ୍ପନିକ ଅଭେଦ ଆରୋପର ସୃଷ୍ଟି ହୁଏ ତାହାର ନାମ ରୂପକ । ରୂପକରେ ଉପମାନ ଓ ଉପମେୟର ଅଭେଦ କଥିତ ହୁଏ ସିନା ଉପମାନ ଉପମେୟକୁ ଗ୍ରାସ କରେ ନାହିଁ ।

## ଉପମା ଓ ରୂପକ :—

ରୂପକ ଅଭେଦ ପ୍ରଧାନ ଅଳଙ୍କାର । ଉପମାରେ ଉପମେୟ ମୂଲ୍ୟବାନ ; ରୂପକରେ ଉପମାନହିଁ ମୂଲ୍ୟବାନ । ଉଦାହରଣଟିର ଏଗୁଡ଼ିକର ସ୍ପଷ୍ଟ ସୂଚନା ଦିଆ ଯାଇପାରେ । ମୁଖ ଓ ଚନ୍ଦ୍ରର ସାଦୃଶ୍ୟ ଉପରେ ଉଦାହରଣ ନିଆଯାଉ । (୧) ମୁଖ ଚନ୍ଦ୍ର ସମ (୨) ମୁଖ ଚନ୍ଦ୍ର (୩) ମୁଖ ନୁହେଁ ଚନ୍ଦ୍ର (୪) ମୁଖ ଚନ୍ଦ୍ର କି ! (୫) ମୁଖ ? ନା ଚନ୍ଦ୍ର ?

୧ମଟି ଉପମା କାରଣ ମୁଖ ଚନ୍ଦ୍ର ସଦୃଶ ତୁଳିତ । ୨ୟଟି ରୂପକ, କାରଣ ମୁଖ ହିଁ ଚନ୍ଦ୍ର ଅର୍ଥାତ୍ ଦୁଇଟି ଭିନ୍ନ ବସ୍ତୁର ଅଭେଦ କଳ୍ପନା । ମୁଖ ଚନ୍ଦ୍ର ଏଠାରେ ରୂପକ କର୍ମଧାରୟ ସମାସ । ଏ ସମାସର ଉପମାନ ଉପମେୟର ଭେଦ ନ ଥାଏ । କ୍ରିୟାପଦ ଉପମାର ଅନୁଗାମୀ ହୁଏ, ତେବେ କ୍ରିୟା ଯାହାର ଅନୁଗାମୀ ସେ କର୍ତ୍ତା । ତେଣୁ ଏଠାରେ କ୍ରିୟା ଉପମାନର ଅନୁଗାମୀ ହୋଇଥିବାରୁ ଉପମାନର ପ୍ରାଧାନ୍ୟ ସ୍ୱୀକୃତ ହେଉଛି । ଉପମେୟ ଗୌଣଭାବରେ ରହି ଯାଉଛି । ତେଣୁ ଉପମେୟ ଗୌଣ । ଉପମାନ ପ୍ରଧାନ ଥିବା ହେତୁ ରୂପକ ଅଳଙ୍କାର ହେଉଛି । ୩ୟଟିରେ ମୁଖ ବା ଉପମେୟକୁ ଅସ୍ୱୀକାର କରି ଚନ୍ଦ୍ର ବା ଉପମାନର ବାସ୍ତବତା ପ୍ରତିଷ୍ଠା ହୋଇଛି ତେଣୁ ତାହା ଅପହ୍ନୁତି ଅଳଙ୍କାର ରୂପେ ସୂଚିତ ହେଉଛି । ୪ର୍ଥରେ ମୁଖକୁ ଚନ୍ଦ୍ର ରୂପେ ସନ୍ଦେହ କରାଯାଉଥିବାରୁ ତାହା ଉତ୍ପ୍ରେକ୍ଷା ଅଳଙ୍କାର ହୋଇଛି । ୫ମରେ ମୁଖ ? ନା ଚନ୍ଦ୍ର ? ଏପରି ୨ଟି ବସ୍ତୁପ୍ରତି ସନ୍ଦେହ ଜାତ ହେଉଥିବାରୁ ସନ୍ଦେହ ଅଳଙ୍କାର ହେଲା ! ଏ ତେଣୁ ସବୁରେ ରୂପକ ନ ହୋଇ ଭିନ୍ନ ଭିନ୍ନ ଅଳଙ୍କାର ହେଲା । କେବଳ ଅଭେଦ କଳ୍ପନା କ୍ଷେତ୍ରରେ ହିଁ ରୂପକ ଅଳଙ୍କାର ହେବ । ଏକ ସୂକ୍ଷ୍ମ ବସ୍ତୁରେ ରୂପକ ଅଳଙ୍କାର ଶକ୍ତି ହୁଏ । ପଦ ବା ବାକ୍ୟ ମଧ୍ୟରେ ଥିବା କ୍ରିୟା ପଦ ଉପମାନର ଅନୁଗାମୀ ହୁଏ ସେଠାରେ ପଦଟି ରୂପକ । କିନ୍ତୁ ଉପମେୟର ଅନୁଗାମୀ ହେଲେ ଉପମା । ଏମିତି କ୍ଷେତ୍ର ବି ଆସିପାରେ ଯେଉଁଠି କ କ୍ରିୟାପଦ ଉଭୟର (ଉପମେୟ, ଉପମାନର) ଅନୁଗାମୀ ହୁଏ, ସେଠାରେ ଉପମା ଓ ରୂପକର ସଙ୍କର ସୃଷ୍ଟି ହୁଏ ।

ଅନେକ ସମୟରେ ଏଇ ରୂପକ ବାକ୍ୟରେ ଅସ୍ପଷ୍ଟତା ସୃଷ୍ଟି ହୋଇଥାଏ । ରୂପକ ଓ ଅନ୍ୟାନ୍ୟ ସାଦୃଶ୍ୟମୂଳକ ଅଳଙ୍କାର ମଧ୍ୟରେ ସାମଞ୍ଜସ୍ୟ ଏପରି ନିବଡ଼ ହୋଇଥାଏ ଯେ ଠିକ୍ ଚିହ୍ନି ହୁଏ ନାହିଁ । କିନ୍ତୁ ଉପର ଲକ୍ଷିତ କାରଣ ହେତୁ ରୂପକ ଅନ୍ୟାନ୍ୟ ଅଳଙ୍କାର ଠାରୁ ଭିନ୍ନ । ଏହା ତିନି ପ୍ରକାର । (୧) ପରଂପରିତ ରୂପକ (୨) ସାଂଗରୂପକ (୩) ନିରଙ୍ଗ ରୂପକ ।

## ପରଂପରିତ ରୂପକ :—

ଯେଉଁଠି ଗୋଟିଏ ଆରୋପ ଅନ୍ୟ ଏକ ଆରୋପ ପ୍ରତି କାରଣ ହୁଏ, ସେଠି ହୁଏ ପରଂପରିତ ଅଳଙ୍କାର । ଗୋଟିଏ ଉପମେୟ ଓ ଉପମାନର ଆରୋପ ଅନ୍ୟ ଏକ ଉପମେୟ ଓ ଉପମାନର ଆରୋପଣର କାରଣ ହେଲେ ଏହି ଅଳଙ୍କାର ହିଁ ସମ୍ଭବ ହୁଏ । ଏହି ରୂପକର କାର୍ଯ୍ୟକାରଣ ସମ୍ପର୍କର ପରଂପରା ଥିବାରୁ ଏହାର ନାମ ପରଂପରିତ ହୋଇଛି ।

ଯତ୍ର କସ୍ୟଚିଦାରୋପଃ ପରାରୋପଣ କାରଣମ୍
ତତ୍ ପରଂ ପରିତମ୍ (ସାହିତ୍ୟ ଦର୍ପଣମ୍

ଉଦାହରଣ :— କ) ଖେଦ ବୀଜ ନିଜ ହୃଦ କେଦାରେ ବୁଣିଲେରେ
(କବିସୂର୍ଯ୍ୟ)

ବିଶ୍ଳେଷଣ :— ଏଠାରେ ଖେଦ = ଦୁଃଖରେ 'ବୀଜତ୍ତ୍ୱ'ର ଆରୋପ ହୃଦୟ ଠାରେ 'କେଦାରତ୍ୱ' ଆରୋପର କାରଣ ହେଉଛି । ତେଣୁ ଖେଦକୁ ବୀଜ ରୂପେ ଅଭେଦ କଳ୍ପନା କରୁ ହୃଦୟକୁ କେଦାର ବୋଲି ଅଭିନ୍ନ ମନେ କରାଯାଉଛି ଓ ବୀଜ ବପନ ହୃଦୟ କେଦାରରେ ସମ୍ଭବ ହୋଇଛି । ଏଠି ଗୋଟିଏ ଆରୋପଣ ଅନ୍ୟର କାରଣ ହୋଇଥିବା ହେତୁ ପରଂପରିତ ରୂପକ ହୋଇଛି ।

(ଖ) ଆଶା ପାରିଜାତ ଫୁଟିବ ହୃଦନନ୍ଦନ ବନେ
ଜନ ଭକ୍ତି କର୍ମ ସୌରଭ ବ୍ୟାପିଯିବ ଭୁବନେ ।
(ଚିଲିକା)

ବିଶ୍ଳେଷଣ :— ଏଠାରେ ଆଶାରେ ପାରିଜାତ ପୁଷ୍ପର ଆରୋପଣ ହୃଦସ୍ଥରେ 'ନନ୍ଦନବନର' ଆରୋପଣର ମୂଳ କାରଣ ହୋଇଛି, ଅର୍ଥାତ୍ ଆଶା ପାରିଜାତ ପୁଷ୍ପ ହେବା ହେତୁ ହୃଦ-ନନ୍ଦନ-ବନରେ ଫୁଟିବା ସମ୍ଭବ ହେଉଛି । ତେଣୁ ପରଂପରିତ ରୂପକ ହୋଇଛି ।

**ସାଂଗ ରୂପକ :—**

ଉପମେୟର ବିଭିନ୍ନ ଅଂଗରେ ଉପମାନର ବିଭିନ୍ନ ଅଂଗର ଆରୋପଣ ହେଲେ ସାଂଗ ରୂପକ ହୁଏ । କିମ୍ବା ଅନ୍ୟ କଥାରେ ଅଂଗ ସହ ଅଂଗୀ ଉପମେୟର ଅଂଗସହ ଅଂଗୀ ଉପମାନର ଅଭେଦ ହେଲେ ସାଂଗ ରୂପକ ହୁଏ । ଗୋଟିଏ ଉଦାହରଣ ଦେଇ ଏ ସବୁର ତାତ୍ପର୍ଯ୍ୟ ବିଶ୍ଳେଷଣ କଲେ ଅଳଂକାରଟି ବୁଝିବା ସହଜ ହେବ ।

ଉଦାହରଣ :— ଯଜ୍ଞାନ୍ତେ ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ ହୃଦବେଦୀ ଯହିଁ
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀ ସ୍ୱରୂପିଣୀ ।
ତପ ବହ୍ନି, କାମ ଆଜ୍ୟ, ବୋଧ ଯଜ୍ଞ ପଶୁ
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ଚେତନ ଉଦ୍‌ଗାତା ।

ବିଶ୍ଳେଷଣ :— ଏଠାରେ ଅଧ୍ୟାତ୍ମବାଦୀ ଯଜମାନଙ୍କୁ ଆଧ୍ୟାତ୍ମିକ ଯାଗ ରୂପେ ଅଭେଦ କଳ୍ପନା କରାଯାଇଛି । ଯଜ୍ଞାନ୍ତେ—ଉପମେୟ ଆଧ୍ୟାତ୍ମିକ ଯାଗ— ଉପମାନ, ଉପମେୟର ବିଭିନ୍ନ ଅଂଗ ସହ ଉପମାନର ବିଭିନ୍ନ ଅଂଗର ଅଭେଦ କଳ୍ପନା କରାଯାଇଛି ।

ନେପଥର ହୃଦୟକୁ ବେଦୀ, ଅତ୍ମାକୁ ଯଜମାନ, ଶ୍ରଦ୍ଧାକୁ ପତ୍ନୀ, ତପକୁ ବହ୍ନି, କାମକୁ ଆଜ୍ୟ ବା ଘୃତ, କ୍ରୋଧକୁ ପଶୁ ଇତ୍ୟାଦିରେ କଳ୍ପନା ହେତୁ ସାଂଗ ରୂପକ ହୋଇଛି ।

(ଗ) ଶୋକର ଝଟିକା ବହେ ରାଣୀଙ୍କ ନବରେ
ବାତଦୀର୍ଘ ଶ୍ୱାସ 'ଓହ୍ଁ' ଲୋତକ ବରଷା
ରାଜରାଣୀଙ୍କର ଘନନୀଳ କେଶରାଜି
କାଦମ୍ବିନୀ, ଗୁରୁ ଅଂଗ ଯଷ୍ଟି ସୌଦାମିନୀ ।”
(ଦଶରଥ ବିୟୋଗ)

ବିଶ୍ଳେଷଣ :— ଏଠାରେ ରାଜଗୃହକୁ ଶୋକର ଝଟିକା ଭାବେ ଅଭେଦ କଳ୍ପନା କରି ଝଟିକାର ଅଙ୍ଗ ବାତ, ଦୀର୍ଘଶ୍ୱାସ, ଲୋତକ ବର୍ଷା, ରାଣୀଙ୍କ ନୀଳକେଶ—ମେଘ ଓ ଗୁରୁ ଅଙ୍ଗଯଷ୍ଟି ସୌଦାମିନୀ ବୋଲି କୁହାଯାଇଛି ।

**ନିରଙ୍ଗ ରୂପକ :—**

କେବଳ ଗୋଟିଏ ଉପମେୟରେ ଗୋଟିଏ ଉପମାନର ଆରୋପ ହେଲେ ନିରଙ୍ଗ ରୂପକ ହୁଏ । ଏକମାତ୍ର ଆରୋପ ହେତୁ ଏହା ସମ୍ଭବ ହୋଇଥାଏ ବୋଲି ଏହାକୁ ନିରଙ୍ଗ ରୂପକ କହନ୍ତି ।

ଉଦାହରଣ :—(କ) ଅବଲୋକେ ବଧୂଦୟା ମୂର୍ତ୍ତିମନ୍ତୀ
ଧଉଳ ଦର୍ପଣେ ଦୟା ସ୍ରୋତସ୍ୱତୀ (ଚିଲିକା)

ବିଶ୍ଳେଷଣ :— ଏଠାରେ ଦୟାନଦୀରେ ବଧୂଦୟାର ଅଭେଦ ଦର୍ଶିତ ହୋଇଛି ।

(ଖ) ଫୋଟିବାରୁ ଘୋର ରକ୍ଷୋରୂପୀ ବ୍ୟାଧି ।
ଉପାଧିରେ ବୁଡ଼ି ଲୋଡନ୍ତି ଉପାଧି — (ଦରବାର)

ବଶ୍ଳେଷଣ :— ଚକୋରୀ ବ୍ୟାଧି— ଏକମାତ୍ର ଆରୋପ ହୋଇ ଥିବାରୁ ।

## ଉତ୍ପ୍ରେକ୍ଷା

## (Poetical Probability)

ଜାବତ ସାଦୃଶ୍ୟ ହେତୁ ପ୍ରକୃତ ବସ୍ତୁ (ଉପମେୟ) କୁ ଯଦି ଅପ୍ରକୃତ ବସ୍ତୁ ବୋଲି ସଂଦେହ କରାଯାଏ ତାହାହେଲେ ହୁଏ ଉତ୍ପ୍ରେକ୍ଷା । ଏହା ସନ୍ଦେହ ସମ୍ଭାବନା ଉପରେ ପ୍ରତିଷ୍ଠିତ । ତେଣୁ ସାହିତ୍ୟ ଦର୍ପଣରେ କୁହାଯାଇଛି— 'ଭବେତ୍ ସମ୍ଭାବ ନୋତ୍ପ୍ରେକ୍ଷା ପ୍ରକୃତସ୍ୟ ପରମ୍ପନା", (ପରମ୍ପନା = ଉପମାନ, ସମ୍ଭାବନା— = ଏକପାକ୍ଷିକ ସଂଶୟ) କିମ୍ବା ଅନ୍ୟ ଭାଷାରେ କହିବାକୁ ଗଲେ ଯଦି ପ୍ରକୃତ ପଦାର୍ଥରେ ଅପ୍ରକୃତ ପଦାର୍ଥର କେବଳ ତର୍କଣା କରାଯାଏ କିମ୍ବା ଉପମେୟକୁ ଉପମାନ ରୂପେ ସଂଶୟ କରାଯାଏ ତାହାହେଲେ ସେଠି ଉତ୍ପ୍ରେକ୍ଷା ଅଳଙ୍କାର ହୁଏ । ଏଇ ଉତ୍ପ୍ରେକ୍ଷା ଅଳଙ୍କାରର ଧର୍ମ ସହ ସଂଦେହ ଓ ଭ୍ରାନ୍ତିମାନ ଅଳଙ୍କାରର ମେଳ ଥିଲାପରି ମନେ ହୁଏ, କିନ୍ତୁ ବାସ୍ତବରେ ସେମାନେ ମଧ୍ୟ ପ୍ରତ୍ୟେକ ପ୍ରତ୍ୟେକ ଠାରୁ ପୃଥକ । ଏ ଗୁଡ଼ିକର ଭେଦ ପରେ ଆଲୋଚିତ ହେବ । ଉତ୍ପ୍ରେକ୍ଷା ଦୁଇ ପ୍ରକାର— (କ) ବାଚ୍ୟୋତ୍ପ୍ରେକ୍ଷା (ଖ) ପ୍ରତୀୟମାନ ଉତ୍ପ୍ରେକ୍ଷା । ଉତ୍ପ୍ରେକ୍ଷା ଯେହେତୁ ସଂଭାବନାକୁ ନେଇ ଜୀବିତ, ତେଣୁ ସମ୍ଭାବନା ବୋଧକ ଶବ୍ଦ ଉତ୍ପ୍ରେକ୍ଷା ଅଳଙ୍କାରର ଅନୁଗାମୀ ହୋଇଥାଏ । ସମ୍ଭାବନା ବୋଧକ ଶବ୍ଦ— କି, ସତେ, ଅବା, ବୋଧେ, ମନେହୁଏ, କିବା ଇତ୍ୟାଦି—

**ବାଚ୍ୟୋତ୍ପ୍ରେକ୍ଷା :—**

ଯେଉଁଠାରେ ସମ୍ଭାବନା ବୋଧକ ଶବ୍ଦର ଉଲ୍ଲେଖ ଥାଇ ଉପମେୟକୁ ଉପମାନ ବୋଲି ସଂଶୟ କରାଯାଇଥାଏ, ସେଠାରେ ହୁଏ ବାଚ୍ୟୋତ୍ପ୍ରେକ୍ଷା ।

ଉଦାହରଣ— (କ) ସ୍ୱର୍ଗ-ପୁରୁ କେଉଁ ଦେବୀ କି
ମର୍ତ୍ତ୍ୟ-ଶାପର ଫଳେ,
ସଦେହରେ ଖସି ପଡ଼ିଛ
ଆସି ଅବନୀତଳେ ? (ତପସ୍ୱିନୀ)

ବିଶ୍ଳେଷଣ :— ବାଲ୍ମୀକି ଆଶ୍ରମ ରାଜ୍ୟରେ ପରିତ୍ୟକ୍ତା ସୀତା କାନ୍ଦୁଥିବା ବେଳେ ମୁନିକୁମାରମାନେ ତାଙ୍କୁ ଦେବୀ ବୋଲି ସମ୍ଭାବନା କରିଛନ୍ତି । ତେଣୁ ଏଠାରେ ଅଳଙ୍କାରଟି ବାଚ୍ୟୋତ୍ପ୍ରେକ୍ଷା ହେଲା ।

(ଖ) ଇନ୍ଦ୍ରନୀଳ କାନ୍ତି ବିଶାଳ ଶୋଭିଲା
ଦେଖି ମୋ ମନକୁ ଆସଇ ଏପରି
ଉର୍ଦ୍ଧ୍ୱେ ଉଠନ୍ତି କି ନଭେ ଶବ୍ଦ ଅବନୀ
ମସ୍ତ୍ର ଧରନ୍ତି ଯାନେ ବୈଦେହୀ (ଚିଲିକା)

ବିଶ୍ଳେଷଣ :— ଚିଲିକାସ୍ଥ ଇନ୍ଦ୍ରନୀଳ ବର୍ଣ୍ଣଧାରୀ ଶୋଭିତ ପର୍ବତ କବି ଦୃଷ୍ଟିରେ ମସ୍ତ୍ରଙ୍କ ନିର୍ମିତ ଯାନରେ ବୈଦେହୀ (ବାଳି) ଆସୁଥିବାର ସଂଶୟଭୂତ ହୋଇଥିବା ହେତୁ ବାଚ୍ୟୋତ୍ପ୍ରେକ୍ଷା ଅଳଙ୍କାର ହେଲା ।

**ପ୍ରତୀୟମାନ ଉତ୍ପ୍ରେକ୍ଷା :—**

ଉଦାହରଣ— (କ) ନ ହେଲେ ଏ ଘନ କୁନ୍ତଳା
ଘନ ସହିତ ତାଙ୍କ

ଖଟି ମଉଡ଼ବାରୁ ଧନ୍ଦରେ
ବନ୍ଧ ପାଉଛନ୍ତି ଧାଗ । (ଲାବଣ୍ୟବତୀ)

ବିଶ୍ଳେଷଣ :— ଅନୁକୂଳାନୁକୂଳ ଶୀତାଙ୍କ ଅଦନରତା ଦେଖି ମୁନି କୁମାରମାନେ ବିଚାର କଲେ— ମେଦିନୀ ସହ ଘାତ ଏ ଖଣ୍ଡ ଦ୍ୱିତୀ ଚନ୍ଦ୍ରଲି । ଆଜି ସେହି ମେଘ ଧାର ହୋଇ ପୃଥିବୀରେ ବନ୍ଧୁପାଉଛନ୍ତି । କିନ୍ତୁ ପ୍ରକୃତରେ ତାହା ନ ହୋଇ ସଂଭାବନା କରାହୋଇଛି । କିନ୍ତୁ ଏ ପଦଟିରେ କି, ଅବା, ଯେପରି ଇତ୍ୟାଦି ଉତ୍ପ୍ରେକ୍ଷା ବାଚକ ଶବ୍ଦ ନାହିଁ । ତେଣୁ ଏହି ଅଳଙ୍କାର ହେଲା ।

## ବ୍ୟତିରେକ

ଉପମା ଅପେକ୍ଷା ଉପମେୟର ଉତ୍କର୍ଷ ସାଧିତ ହେଲେ ବ୍ୟତିରେକ ଅଳଙ୍କାର ହୁଏ । ଏହା ଗୋଟିଏ ଭେଦ ପ୍ରଧାନ ଅଳଙ୍କାର । ପ୍ରାଚୀନ ଓଡ଼ିଆ କାବ୍ୟ କବିତାରେ ବର୍ଣ୍ଣିତ ନାୟିକା ରୂପ ବର୍ଣ୍ଣନା ସମୟରେ କିମ୍ବା ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ସମୟରେ କିମ୍ବା ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ଅବସରରେ ଏହାର ଦୃଷ୍ଟାନ୍ତ ପର୍ଯ୍ୟାପ୍ତ ଭାବରେ ପରିଲକ୍ଷିତ ହୋଇଥାଏ ।

ଉଦାହରଣ—(କ) ତାହାର ମୁଖରୁ କି ଉପମା ଭୂତଳ
ଦେଖି କଳାନିଧି କଲା କ୍ଷୀଣ ମଣ୍ଡଳ ।
( ରୁକ୍ମିଣୀ ବିଭା )

ବିଶ୍ଳେଷଣ :— ଏଠାରେ ରୁକ୍ମିଣୀଙ୍କ ରୂପ ବର୍ଣ୍ଣନା କରାଯାଇଛି । ରୁକ୍ମିଣୀ ରୂପ ବର୍ଣ୍ଣନା ପ୍ରସଙ୍ଗରେ ତାଙ୍କର ମୁଖମଣ୍ଡଳର ସୌନ୍ଦର୍ଯ୍ୟ ନିକଟରେ କଳାନିଧି ଯେ ଚନ୍ଦ୍ର ପରାଜିତ ହୋଇ କ୍ଷୀଣ ହୋଇ

ଅଛନ୍ତି । ସେଣୁ ପ୍ରସିଦ୍ଧ ଉପମେୟ 'ମୁଖ' ଉତ୍କୃଷ୍ଟ ରୂପେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଉପମାନ କଳାନିଧି ଚନ୍ଦ୍ରଙ୍କ ନ୍ୟୂନତା ପ୍ରକାଶ ପାଉଛି । ସୁତରାଂ ବ୍ୟତିରେକ ଅଳଙ୍କାର ହେଲା ।

(ଖ) ପ୍ରବାଳ କହୁଥା ସେ ଅତି କଠୋର !
କେଉଁ ଗୁଣେ ତୁଲ ହେବ ଜବା ମନ୍ଦାର ।
(ରୁକ୍ମିଣୀ ବିଭା)

ବିଶ୍ଳେଷଣ :— ରୁକ୍ମିଣୀଙ୍କ ଅଧର ନିକଟରେ ପ୍ରବାଳ, ଜବା-ମନ୍ଦାର ଇତ୍ୟାଦି ଉପମାନ ନ୍ୟୂନ ।

(ଗ) ନୀଳିମାଠାରେ ବାମା ଚିକୁର କେଶପାଶ
ଯେଣୁ ନୀଳ ବାରିଦ ଜଳ ଉପହାସ । (ଚିଲିକା)

ବିଶ୍ଳେଷଣ :— ଏଠାରେ ଚିଲିକା ର ଲହରୀ ଅପେକ୍ଷା ଚନ୍ଦ୍ରାବତୀର କେଶପାଶ ଅଧିକ ନୀଳ । ଉପମାନ ଅପେକ୍ଷା ଉପମେୟର ଉତ୍କୃଷ୍ଟ କଥନ ହେତୁ ବ୍ୟତିରେକ ହେଲା ।

## ପ୍ରତୀପ

ଉପମାନ ଯଦି ଉପମେୟ ରୂପେ କଳ୍ପିତ ହୁଏ କିମ୍ବା ଉପମେୟ ନିଜର ଶ୍ରେଷ୍ଠତ୍ୱ ହେତୁ ଉପମାନକୁ ପ୍ରତ୍ୟାଖ୍ୟାନ କରେ ତାହାହେଲେ ପ୍ରତୀପ ହୁଏ । ଏହି ପ୍ରତ୍ୟାଖ୍ୟାନର ଅର୍ଥ ନିଷ୍ପ୍ରୟୋଜନ ହେତୁ ପରିହାର କରିବା କିମ୍ବା ନିଷ୍ଫଳ ବୋଲି ପ୍ରମାଣ କରିବା । ପ୍ରତୀପ ଅଳଙ୍କାରରେ ମୋଟାମୋଟି ଦୁଇ ପ୍ରକାରର ଲକ୍ଷଣ ପରିଲକ୍ଷିତ ହୁଏ । ସୂକ୍ଷ୍ମ ଦୃଷ୍ଟିରୁ ଦେଖିଲେ ମନେ ହୁଏ ଏହା ବ୍ୟତିରେକର ଅତି ନିକଟବର୍ତ୍ତୀ । ବ୍ୟତିରେକ

ପ୍ରତୀପର ଭେଦ ସାମାନ୍ୟ । ତେଣୁ ଏମାନଙ୍କ ବ୍ୟତିରେକରେ ଯେଉଁଠି ଉପମେୟକୁ ପ୍ରାଧାନ୍ୟ ଦିଆଯାଏ, ପ୍ରତୀପରେ ସେଠି ଉପମାନଙ୍କୁ ପ୍ରତ୍ୟାଖ୍ୟାନ କରାଯାଏ । କାରଣ ଏହି ପ୍ରତୀପ ଅଳଙ୍କାରରେ ଉପମେୟ ଏତେ ଉତ୍କୃଷ୍ଟ ବୋଲି ବିବେଚିତ ହୁଏ ଯେ, ସେଠି ଉପମାନର ନିଷ୍ଫଳତା ବା ନିଷ୍ପ୍ରୟୋଜନତା କଥିତ ହୁଏ ।

ପ୍ରତୀପରେ ଏହି ଦୁଇପ୍ରକାର ଅର୍ଥ ଶବ୍ଦରୁ ପ୍ରଥମତଃ ଉପମାନ ଉପମେୟ ରୂପେ କଥିତ ହୁଏ । ଦ୍ୱିତୀୟତଃ ଉପମାନ ପ୍ରତ୍ୟାଖିତ ହୁଏ ।

ପ୍ରଥମ ପ୍ରକାର ଉଦାହରଣ :—

କାହିଁପାଇଁ ଅଙ୍ଗ ମଣ୍ଡି ହୁଅନ୍ତି ସେ
ପାରିଜାତ କୁସୁମକୁ ।
କେତେ ତପସ୍ୟା କରିଛି ଯେଣୁ ସେ
ମନୋହର ହାସ ସମକୁ (ରସକଲ୍ଲୋଳ)

ଏହାର ଅର୍ଥ :— ଦେବତାମାନେ ପାରିଜାତକୁ ଅଙ୍ଗରେ କାହିଁକି ମଣ୍ଡି ହୁଅନ୍ତି ? ପାରିଜାତ ଫୁଲ ବହୁ ତପସ୍ୟାରେ ଗୋପୀମାନଙ୍କର ହାସସମ ହୋଇ ପାରିଛି । ଏଠାରେ ଉପମାନ 'ପାରିଜାତ କୁସୁମ' ଉପମେୟ ରୂପେ ପରିକଳ୍ପିତ ହୋଇଛି । ଫଳେ ହାସ ପାରିଜାତ ସଦୃଶ ନ ହୋଇ ଓଲଟାରେ ପାରିଜାତ ହାସ ସଦୃଶ ହୋଇଛି ବୋଲି ବର୍ଣ୍ଣନା କରାଯାଇ ଥିବାରୁ ପ୍ରତୀପ ଅଳଙ୍କାର ହୋଇଛି ।

ଯେପରିକି— ଫୁଟିଲା ଅକ୍ଷି କମଳ ଧାଡ଼ି
କାନ୍ତାନନ ତୁଲ୍ୟ ।

ଏଠାରେ ଉପମେୟ ଆନନ ଓ ଉପମାନ କମଳ ବିପରୀତ ଭାବେ ସ୍ଥାନ ଅଧିକାର କରିଛନ୍ତି । ଫଳରେ କମଳ, କଠଳାନନ ନ ହୋଇ 'ଆନନ ତୁଲ୍ୟ କମଳ' ହୋଇ ପାରୁଛି । ତେଣୁ ପ୍ରତୀପ ଅଳଙ୍କାର ହେଉଛି ।

ଦ୍ୱିତୀୟ ପ୍ରକାର ଉଦାହରଣ :—

(କ) ପଦ୍ମ ସୌରଭ ଚଣ୍ଡି ଶ୍ୱାସ ସମୀର
ନାସାକୁ ଉପମାନ ତିଳ କୁସୁମ ସ୍ଥିର (ରୁକ୍ମିଣୀ ବିଭା)

ଏଠାରେ ଉପମାନ ତିଳ କୁସୁମର ନିଷ୍ଫଳତା ବର୍ଣ୍ଣିତ ହେଉଛି । ଅତଏବ ପ୍ରତୀପ ।

(ଖ) ଦାଡିମ୍ବ ଫାଟିଲା ଘୃଣା ଦଶନ ଗୃହି
ମୋତିବର କରିକୁମ୍ଭେ ଲୁଚିଲ ସ୍ଥାଇ ।

ପ୍ରସିଦ୍ଧ ଉପମାନ ଦାଡିମ ବା ଡାଳିମ୍ବ ରୁକ୍ମିଣୀର ଦଶନର ଶୋଭାର ପ୍ରକାଶ ପାଇଁ ଅନାବଶ୍ୟକ ରୂପେ ବର୍ଣ୍ଣିତ ହୋଇଛି । ତେଣୁ ପ୍ରତ୍ୟାଖ୍ୟାତ ହେଲା । ଉପମାନ ପ୍ରତ୍ୟାଖ୍ୟାତ ହେବାରୁ ପ୍ରତୀପ ଅଳଙ୍କାର ହେଲା ।

ପ୍ରତୀପ ଓ ବ୍ୟତିରେକ ମଧ୍ୟରେ ଭେଦ :—

ଉପମେୟର ଉତ୍କର୍ଷ ସାଧନ ସେମାନଙ୍କର ଲକ୍ଷ୍ୟ । କିନ୍ତୁ କଥା ଭିନ୍ନ । ପ୍ରତୀପରେ ଉପମାନ ଉପମେୟ ରୂପେ ବର୍ଣ୍ଣିତ । ଉପମାନର ଉପମେୟ ନିକଟରେ ନିଷ୍ଫଳତା ହେତୁ ଓ ଅନାବଶ୍ୟକ ହେତୁ ପ୍ରତ୍ୟାଖିତ । କିନ୍ତୁ ବ୍ୟତିରେକରେ କେବଳ ମାତ୍ର ଉପମେୟ ଠାରୁ ଉପମାନର ଆଧିକ୍ୟହିଁ ବର୍ଣ୍ଣିତ । ତେଣୁ ବ୍ୟତିରେକ ଓ ପ୍ରତୀପ ମଧ୍ୟରେ ଭେଦ ଅତି ସାମାନ୍ୟ ।

## ଉତି

ବହୁଗୁଣ ଥିବା ହେତୁ ଏକବସ୍ତୁ ଯଦି (କ) ବିଭିନ୍ନ ଲୋକ ଦ୍ୱାରା ଅନେକ ପ୍ରକାରରେ ଅନୁଭୂତ ହୁଏ କିମ୍ବା (ଖ) ଏକବ୍ୟକ୍ତି ଯଦି ସେହି ବସ୍ତୁକୁ ବିଭିନ୍ନ ଦୃଷ୍ଟିକୋଣରେ ଦେଖେ ତାହାହେଲେ ଉଲ୍ଲେଖ ଅଳଙ୍କାର ହୁଏ ।

ଉଦାହରଣ :— ଶିଶୁଙ୍କୁ ଦିଶନ୍ତି ଶିଶୁ ପ୍ରାୟେ
ନାରୀଙ୍କ ଦୃଷ୍ଟିକୁ ମଦନ ସ୍ୱରୂପେ
ବୃଦ୍ଧଙ୍କୁ ବାଳକ ସ୍ୱଭାବ ମତି
ଜ୍ଞାନୀଙ୍କୁ ନିର୍ଗୁଣ ରୂପ ଶ୍ରୀପତି
ଭକ୍ତଙ୍କୁ ନନ୍ଦନନ୍ଦନ ପରି
ନାନା ରୂପ ଧରେ ମନ୍ଦରଧାରୀ ।

ସ୍ପଷ୍ଟୀକରଣ :— ଏଠାରେ ଏକ ବ୍ୟକ୍ତି କୃଷ୍ଣ, ଶିଶୁଙ୍କୁ ଶିଶୁ, ନାରୀଙ୍କୁ କନ୍ଦର୍ପ, ବୃଦ୍ଧଙ୍କୁ ବାଳକ, ଜ୍ଞାନୀଙ୍କୁ ନିର୍ଗୁଣ ନିରାକାର ଏବ ଭକ୍ତଙ୍କୁ ନନ୍ଦନନ୍ଦନ ପରି ଦିଶନ୍ତି । ତେଣୁ ଏକବ୍ୟକ୍ତି ବିଭିନ୍ନ ରୂପରେ ଅନେକଙ୍କ ଦ୍ୱାରା ଅନୁଭୂତ ହୋଇଥିବାରୁ ଉଲ୍ଲେଖ ଅଳଙ୍କାର ହେଲା ।

## ଅପହ୍ନୁତି

ପ୍ରକୃତ ବସ୍ତୁ ( ଉପମେୟ ) କୁ ଉପେକ୍ଷା ବା ଅସ୍ୱୀକାର କରି ଯଦି ଅପ୍ରକୃତ ବସ୍ତୁ ( ଉପମାନ ) କୁ ପ୍ରତିଷ୍ଠା କରାଯାଏ ତାହାହେଲେ ଅପହ୍ନୁତି ଅଳଙ୍କାର ହୁଏ । ସଂକ୍ଷେପରେ କହିବାକୁ ଗଲେ, ଏହି ଅଳଙ୍କାରରେ ଉପମେୟକୁ ଅସ୍ୱୀକାର କରି ଉପମାନକୁ ଉଜ୍ଜ୍ୱଳଭାବେ ପ୍ରତିଷ୍ଠା କରାଯାଏ ।

ଅପହ୍ନୁତ ରେ ହେଉଛି ଉତ୍ପତ୍ତି— ଅପହ୍ନବନ୍ତୁ—
ଅପହ୍ନବ ଅର୍ଥ— ନିଷେଧ, ଅସ୍ୱୀକାର ।

ଉଦାହରଣ :—

(କ) ଅଲେଖିନ୍ଦୁ କଳଙ୍କେ ସିନ୍ଦୁର ବିନ୍ଦୁ ଦେଇ ଅଛି
ନୁହଇ ସିନ୍ଦୁର ରହିଛି ସ୍ମର ହୃଦସ୍ଥ ଲକ୍ଷି (ଚନ୍ଦ୍ରଭାଗା)

ବିଶ୍ଳେଷଣ :— ଏଠାରେ ପ୍ରକୃତ ସିନ୍ଦୁର ବିନ୍ଦୁକୁ ଅସ୍ୱୀକାର କରିଯାଇ ସ୍ମର ହୃଦସ୍ଥକୁ ସ୍ଥାପନା କରିଯାଇଛି । ତେଣୁ ଅପହ୍ନୁତ ହୋଇଛି ।

(ଖ) କେତେକ ଶିଶିର ବୃକ୍ଷେ ଝରେ ଅବା
କୁସୁମ ବର୍ଷିଗଲେ
କେତକୀ କର ସ୍ମରଣ ମାତ୍ରକେ
ଲୋତକ ମୋଚନ କଲେ (ପ୍ରଣୟ ବଲ୍ଲରୀ)

ବିଶ୍ଳେଷଣ — ବୃକ୍ଷଙ୍କ ଶିଶିର ବିନ୍ଦୁ ପାତ କମ୍ବା କୁସୁମ ବର୍ଷଣ ପ୍ରକୃତରେ ତାହା ନୁହେ । କିନ୍ତୁ ତାହା ଲୋତକ ମୋଚନ । ସେ-ଗୁଡ଼ିକ ପ୍ରକୃତ ବସ୍ତୁ ହେଲେ ମଧ୍ୟ ତାକୁ ଅସ୍ୱୀକାର କରି ଅନ୍ୟର ସ୍ଥାପନା ହେବା ହେତୁ ଅପହ୍ନୁତ ଅଳଙ୍କାର ହେଲା ।

(ଗ) ସୀତା ବୋଇଲେ ପନୀର— ମଧୁର ଏ ସ୍ୱଚ୍ଛନୀର
ନୀର ନୁହେଁ ଜନନୀର କ୍ଷୀର ପ୍ରତ୍ୟକ୍ଷେ
ଗିରିସ୍ତନୁ ବିନିସୃତ ହୋଇ ଆସୁଛି ଅମୃତ
ଧାରି ପଦ ସୀତାମୃତ କଳପା ଲକ୍ଷ୍ୟେ ।
( ତପସ୍ୱିନୀ )

ବିଶ୍ଳେଷଣ :— ଏଠାରେ ନେଦାର ଜଳକୁ ମଧୁର ନୀର ବୋଲି କହିସାରିବା ପରେ ପୁଣି କୁହାଯାଇଛି ଯେ ଏହା ନୀର ନୁହେଁ,

ଜନନୀର କ୍ଷୀର । ନାକେ ଅସ୍ୱୀକାର କରି କ୍ଷୀର ବୋଲି ସ୍ଥାପନା କରାଯିବାରୁ ଏହି ଅଲଙ୍କାର ହେଲା ।

## ଭ୍ରାନ୍ତିମାନ : ସନ୍ଦେହ : ଉତ୍ପ୍ରେକ୍ଷା

**ସନ୍ଦେହ** :— ଯେଉଁଠି ଉପମେୟ (ପ୍ରକୃତ ବସ୍ତୁ) ଏବଂ ଉପମାନ (ଅପ୍ରକୃତ ବସ୍ତୁ) ଏହି ଦୁଇଟିରେ ସଂଶୟ ଜନ୍ମେ, ସେଠାରେ ସନ୍ଦେହ ଅଲଙ୍କାର ହୁଏ । ସଂଶୟ ମୁଖ୍ୟତଃ ଏହି ଅଲଙ୍କାରର ଭିତ୍ତି । ଏହା ତିନି ପ୍ରକାର — ଶୁଦ୍ଧ ସନ୍ଦେହ, ନିଶ୍ଚୟାନ୍ତ ସନ୍ଦେହ ନିଶ୍ଚୟଗର୍ଭ ସନ୍ଦେହ ।

ଯଥା :— କ୍ରୋଧ ଦେଖନ୍ତି କାହାକୁ ଚୋର ନୟନ କୀର
ଦେବୀ କି ମାନବୀ ସନ୍ଦେହେ ହେଉ ନାହିଁ ତ ବାଣ ।
(ତପସ୍ୱିନୀ)

ବିଶ୍ଳେଷଣ :— ଏଠାରେ ପ୍ରକୃତବସ୍ତୁ ସୀତାଙ୍କ ଠାରେ ଅପ୍ରକୃତବସ୍ତୁ ଦେବୀ ବା ମାନବୀର ସଂଦେହ ଅକ୍ଷୁର୍ଣ୍ଣ ରହିଥିବା ହେତୁ ପଦ୍ୟାଂଶଟିରେ ଶୁଦ୍ଧ ସଂଦେହର ସୂଚନା ମିଳୁଛି ।

ନିଶ୍ଚୟାନ୍ତ ସଂଦେହ :— ସଂଦେହ ଶେଷରେ ନିଶ୍ଚୟ ବୋଧ ଆସୁଥିଲେ ଯଥା :—

ଖଳିଲ ହୋଇଛି ଅବା ଏଠି ବନଦେବୀଙ୍କ ମେଳା
କିରାତନୀ ବେଶେ ଖେଳୁଛନ୍ତି ପବି ଚାରିଧି ଖେଳା
କିଂଅବା ବେଶୀ ରୂପେ ମୁକ୍ତକେଶୀ ହର ସୁନ୍ଦରୀ
ଯୋଗିନୀ ଗ୍ରହଣେ ଭ୍ରମନ୍ତି ରଜତ ତ୍ରିଶୂଳ ଧରି
ନାହିଁ ନାହିଁ ସ୍ୱର ନାଗରୀରୁ ଏଥି ଅଛି ବିଶେଷ
ମର୍ତ୍ତ୍ୟନାରୀ ବୋଲି ଜଣାଇ ଦେଉଛି ନେତ୍ର ଉନ୍ମେଷ
( ଉଷା )

ବିଶ୍ଳେଷଣ :— ଏଠି ଊଷାଙ୍କୁ ପାର୍ବତୀ ଲକ୍ଷ୍ମୀ ବନଦେବୀ ବୋଲି ସଂଦେହ କରାଯାଉଛି । କିନ୍ତୁ ଶେଷରେ ନିଶ୍ଚୟ ବୋଧ ଅଛି । ତେଣୁ ନିଶ୍ଚୟାନ୍ତ ସଂଦେହ ହେଲା ।

ନିଶ୍ଚୟଗର୍ଭ ସନ୍ଦେହ :— ପ୍ରଥମେ ସଂଶୟଭାବ ପରେ ନିଶ୍ଚୟ ବୋଧ ପୁଣି ସନ୍ଦେହ ଜାତ ହେଲେ ନିଶ୍ଚୟଗର୍ଭ ସନ୍ଦେହ ହୁଏ ।

ଯଥା :— ମାର୍ତ୍ତଣ୍ଡ ଏ କି ? ନାହିଁ ସେ ସପ୍ତାଶ୍ୱ ବାହନ
ଅନଳ କି ? ନାହିଁ ତାଙ୍କ ଶିଖା ଲେଲିହାନ
କୃତାନ୍ତ କି ? କିନ୍ତୁ ସେ ତ ମହିଷ-ଆରୋହୀ
ଏମନ୍ତେ ଦୁଷ୍ମନ୍ତ ନୃପେ ଦେଖି କୁହାକୁହି ।

ବିଶ୍ଳେଷଣ :— କୌଣସି ରାଜାଙ୍କୁ ଦେଖିଲା ପରେ ଲୋକମାନଙ୍କ ମନରେ ପ୍ରଥମେ ସନ୍ଦେହ ତା ପରେ ଧାରଣାର ଦୃଢ଼ତା ଏବଂ ପୁଣି ଶେଷରେ ସନ୍ଦେହ ଜାତ ହେବାକୁ ଏପରି ଭାବେ ବର୍ଣ୍ଣନା କରାଯାଇଛି ବୋଲି ଏହି ଅଳଙ୍କାର ହେଲା ।

ଭ୍ରାନ୍ତିମାନ :— ସାଦୃଶ୍ୟ ଥିବା ହେତୁ କୌଣସି ଗୋଟିଏ ବସ୍ତୁକୁ ଦେଖି ଅପର ଏକ ବସ୍ତୁର ଭ୍ରମ ଜାତ ହେଲେ ଭ୍ରାନ୍ତିମାନ ଅଳଙ୍କାର ହୁଏ ।

ଯଥା :—

(କ) ଅମଳ ନୀଳ କମଳରେ ଭ୍ରମର ଯୁଗଳେ ବସିବା ଗୁହିଁ ।
ଦୃଷ୍ଟା କୃଷ୍ଣାନନ ନୟନ ବନ୍ଧୁର ଗନ୍ଧଗୁଣ ବୁଝି ତହିଁ
ଶୁଣି କୀଚକ ନାଦ, କୃଷ୍ଣ ବେଣୁ ଗୀତ ମଣିଥିଦ ।
(କବି: ଚିନ୍ତାମଣି )

ବିଶ୍ଳେଷଣ :— ଏଠାରେ କୀଚକ ନାଦ ଶୁଣି ରାଧାଙ୍କ ମନରେ କୃଷ୍ଣଙ୍କ ବେଣୁଗୀତର ଭ୍ରମ ସୃଷ୍ଟି କରୁଛି । ତେଣୁ ଏହା ଅଳଙ୍କାର ହେଲା ।

(ଖ) ଅପୂର୍ବ ଅମୃତ ମୁଖକୁ ଗୃହଁ ଭୃଙ୍ଗ ଚକୋରେ
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତ ଗୃହଁ କାନନେ,
(ଲାବଣ୍ୟବତୀ)

ବିଶ୍ଳେଷଣ :— ଲାବଣ୍ୟବତୀର ମୁଖକୁ ଦେଖି ଭ୍ରମରମାନେ ପଦ୍ମ ବୋଲି, ଚକୋରମାନେ ଚନ୍ଦ୍ର ବୋଲି ମନେ କରୁଛନ୍ତି ! ଲାବଣ୍ୟବତୀ ମୁଖ ଦେଖି ଭ୍ରାନ୍ତ ଜ୍ଞାନ ହେଉଥିବାରୁ ଏଥି ଅଳଙ୍କାର ହେଲା ।

ଉତ୍ପ୍ରେକ୍ଷା :— ସାଦୃଶ୍ୟ ଥିବା ହେତୁ ପ୍ରକୃତ ବସ୍ତୁ ଯଦି ଅପ୍ରକୃତ ବୋଲି ସଂଭବତ ହୁଏ ତାହାହେଲେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ ।

ଯଥା :— ସ୍ୱର୍ଗପୁରୁ କେଉଁ ଦେବୀ କି
ସଦ୍ୟ ଶାପର ଫଳେ
ସିଁଦେନ୍ଦରେ ଖସି ପଡ଼ିଛି
ଆସି ଅବନୀ ତଳେ ?

ବିଶ୍ଳେଷଣ :— ଏଠାରେ ପ୍ରକୃତ ବସ୍ତୁ ସୀତାଙ୍କୁ ଅପ୍ରକୃତ ବସ୍ତୁ ଦେବୀ ରୂପେ ତର୍କଣା କରଯାଇଛି ।

ସଂଦେହ, ଉତ୍ପ୍ରେକ୍ଷା, ଓ ଭ୍ରାନ୍ତିମାନଙ୍କ ଥିବା ପାର୍ଥକ୍ୟ :—

ସଂଶୟ ସମସ୍ତଙ୍କର ହେତୁ । ମାତ୍ର ସଂଦେହରେ ସଂଶୟର ସ୍ୱରୂପ ଦ୍ୱିପାକ୍ଷିକ (Dovble sided) ଅର୍ଥାତ୍ ସଂଦେହରେ ଉପମେୟ, ଉପମାନ ଉଭୟ ସଂଶୟାଧିଷ୍ଟ ହୋଇ ପଡ଼ନ୍ତି । ମାତ୍ର ଉତ୍ପ୍ରେକ୍ଷାରେ ଏହି ସଂଶୟ କେବଳ ଉପମାନ ଉପରେ ସ୍ଥାପିତ । ମାତ୍ର ଭ୍ରାନ୍ତିମାନର ଜନ୍ମ ଭ୍ରମରୁ ହିଁ ହୋଇଥାଏ । କୌଣସି ବସ୍ତୁର ସ୍ଥିତିରେ ସଂଦେହ ନ ହୋଇ ଭ୍ରମର ସୂଚନା ମିଳେ । ଏକବସ୍ତୁ ଭିନ୍ନ ବସ୍ତୁ ରୂପେ ଭ୍ରାନ୍ତି ଜନ୍ମେ । କିନ୍ତୁ ଭିନ୍ନ ବସ୍ତୁ

ବୋଲି ସଂଦେହ ଆସେନା । ଉପମାନ, ଉପମେୟକୁ ଗ୍ରହଣ ଭିନ୍ନ ଏକ ବସ୍ତୁର ଭ୍ରମ ମଧ୍ୟ ଏହି ଅଲଙ୍କାରରେ ଆସିପାରେ । ଭ୍ରାନ୍ତି-ମାନରେ ଏଭଳି ଶାବ୍ଦିକ ବିନ୍ୟାସ ଗତ ପାର୍ଥକ୍ୟରୁ ହିଁ ଆଲଙ୍କାରିକ ସ୍ୱରୂପର ପାର୍ଥକ୍ୟ ଚିହ୍ନାପାଏ । ମିଳନ, ବିରହ ଜନିତ ଚିତ୍ତ ବିକାରଗତ ଭ୍ରମରୁ ଭ୍ରାନ୍ତିମାନ ଅଲଙ୍କାରର ଉତ୍ପତ୍ତି ହୁଏନା । ଚିତ୍ତ ବିକାରଗତ ଭ୍ରାନ୍ତିରୁ ଜନିତ ଭ୍ରମକୁ ଭ୍ରାନ୍ତିମାନ ଅଲଙ୍କାର ରୂପେ ଗ୍ରହଣ ନ କରିବାକୁ କାବ୍ୟଶାସ୍ତ୍ରରେ ନିର୍ଦ୍ଦେଶ ଅଛି । ସଂଶୟ ଏହି ଉଭୟଟିର ମୂଳଭିତ୍ତି ହେଲେ ମଧ୍ୟ ଏ ପ୍ରକାର ପାର୍ଥକ୍ୟ ଥିବା ହେତୁ ଏଗୁଡ଼ିକ ଭିନ୍ନ ଭିନ୍ନ ଅଲଙ୍କାର ରୂପେ କାବ୍ୟ ଶାସ୍ତ୍ରରେ ସ୍ପଷ୍ଟଭାବେ ପରିକଳ୍ପିତ ।

## ପ୍ରତିବସ୍ତୂପମା : ଦୃଷ୍ଟାନ୍ତ ନିଦର୍ଶନା

ମୁଖ୍ୟତଃ ଏଗୁଡ଼ିକ ସାଦୃଶ୍ୟମୂଳକ ଅଲଙ୍କାର, ସାମ୍ୟ, ସାଦୃଶ୍ୟ ବା ସାଧର୍ମ୍ୟ ଏମାନଙ୍କର ଭିତ୍ତି ହୋଇଥିବା ହେତୁ, ଏଗୁଡ଼ିକର ବିଚାର ବେଳେ ସାଦୃଶ୍ୟର ମୂଳସୂତ୍ର ଉପମା ଆଦୌ ଉପେକ୍ଷଣୀୟ ନୁହେଁ । ଏମାନେ ସ୍ୱକୀୟତାରେ ଯେତେ ପ୍ରଭାବନ୍ତ ନୁହନ୍ତି, ଉପମାର ଉଜ୍ଜ୍ୱଳତାରେ ସେତେ ଶ୍ରୀଯୁକ୍ତ । ଉପମା ଓ ଏମାନଙ୍କର ଭିତରେ ଥିବା ସମ୍ବନ୍ଧ ଅତି ଘନିଷ୍ଠ ଏବ ପାର୍ଥକ୍ୟ ମଧ୍ୟ ସେହିପରି ସୁସ୍ପଷ୍ଟ ।

ଉପମା :— ଏକପଦୀ (ବାକ୍ୟ) ଅଲଙ୍କାର ।

ପ୍ରତିବସ୍ତୂପମା :— ଦୁଇଟି ସ୍ୱତନ୍ତ୍ର ବାକ୍ୟର ଅଲଙ୍କାର ।

ଦୃଷ୍ଟାନ୍ତ :— ଦୁଇଟି ସ୍ୱତନ୍ତ୍ର ବାକ୍ୟର ଅଲଙ୍କାର ।

ନିଦର୍ଶନା :— ଏକପଦୀ ଅଳଙ୍କାର ।

ପ୍ରତିବସ୍ତୂପମାର ଉତ୍ପତ୍ତି :—

ପ୍ରତିବସ୍ତୁ + ଉପମା = ଉପମା । ପ୍ରତିବସ୍ତୁ ଏକ ଅବ୍ୟୟୀଭାବ ସମାସ ।
ଯେପରି ଜନକୁ ଜନ = ପ୍ରତିଜନ ।
ସେହିପରି ବସ୍ତୁକୁ ବସ୍ତୁ = ପ୍ରତିବସ୍ତୁ ।

ବସ୍ତୁର ଅର୍ଥ— ଅଳଂକାର ଶାସ୍ତ୍ରରେ ବାକ୍ୟ, ବାକ୍ୟାଂଶ, ପଦ ବା ଉପବାକ୍ୟକୁ ବୁଝାଏ । ବସ୍ତୁର ଆଳଙ୍କାରିକ ଅର୍ଥ ପଦ ବାକ୍ୟ ହୁଏ, ତାହାହେଲେ ପ୍ରତିବସ୍ତୂପମାରେ ଥିବା ଦୁଇଟି ସ୍ୱତନ୍ତ୍ର ବସ୍ତୁ ବା ବାକ୍ୟ ମଧ୍ୟରୁ ଗୋଟିଏ କବିର ମୂଳ ବର୍ଣ୍ଣନୀୟ ବସ୍ତୁ ବା ପ୍ରକୃତ ବା ପ୍ରାକରଣିକ । ଅନ୍ୟଟି ଅପ୍ରକୃତ ବା ଅପ୍ରାକରଣିକ । ପ୍ରତିବସ୍ତୂପମାରେ ପ୍ରକୃତଟି ଉପମେୟ ଓ ଅପ୍ରକୃତଟି ଉପମାନ । ପ୍ରତିବସ୍ତୂପମା ସୃଷ୍ଟି କରିବାକୁ ହେଲେ ଗୋଟିଏ ମାତ୍ର ସାଧାରଣ ଧର୍ମକୁ ଦୁଇଟି ବାକ୍ୟ ମଧ୍ୟରେ ଭିନ୍ନ ଭଂଗୀରେ ପ୍ରକାଶ କରିବାକୁ ହୁଏ । ଏହି ଦୁଇଟି ବାକ୍ୟ ମଧ୍ୟରୁ ପ୍ରକୃତ ବାକ୍ୟ ବା ବସ୍ତୁରେ ସାଧାରଣ ଧର୍ମର ନିର୍ଦ୍ଦେଶ ଯେପରି ଥାଏ, ଅପ୍ରକୃତ ବାକ୍ୟ ବା ବସ୍ତୁରେ ମଧ୍ୟ ସେହିପରି ଥାଏ । ଅର୍ଥାତ୍ ବାକ୍ୟ ବାକ୍ୟରେ କିମ୍ବା ବସ୍ତୁ ବସ୍ତୁରେ ସାଧାରଣ ଧର୍ମର ନିର୍ଦ୍ଦେଶ ଥାଇ ଏକ ଉପମା ଦ୍ୟୋତକ ଅଳଙ୍କାର ସୃଷ୍ଟି ହୁଏ । ତାର ନାମ ପ୍ରତିବସ୍ତୂପମା । ଅନ୍ୟ ପ୍ରକାରେ କହିଲେ ପ୍ରତିବସ୍ତୁ ଦ୍ୱାରା ସୂଚିତ ଉପମା ହିଁ ପ୍ରତିବସ୍ତୂପମା ରୂପେ ପରିଚିତ ।

ପ୍ରତିବସ୍ତୂପମାର ସଂଜ୍ଞା :— (୧) ଦୁଇ ସ୍ୱତନ୍ତ୍ର ବାକ୍ୟସ୍ଥ ଉପମାରେ ସାଧାରଣ ଧର୍ମ ପ୍ରକୃତ ବା ଅପ୍ରକୃତ ବାକ୍ୟରେ ପୁନଃଥରେ ପ୍ରକାଶିତ ହୋଇ ଯଦି ଏକାର୍ଥ ବୋଧକ ତଥା ବସ୍ତୁପ୍ରତି ବସ୍ତୁଭାବାପନ୍ନ ହୁଏ ତାହାହେଲେ ପ୍ରତିବସ୍ତୂପମା ହୁଏ ।

କଳ୍ପ (୨) ଅନ୍ୟ ସରଳ ଭାଷାରେ କହିବାକୁ ଗଲେ—ସାଦୃଶ୍ୟ ମୂଳକ ଦୁଇଟି ଭିନ୍ନ ବାକ୍ୟରେ ସାଧାରଣ ଧର୍ମ ଏକାର୍ଥବୋଧକ ହୋଇ ପଦ ଭିନ୍ନ ଭିନ୍ନ ଆକାରରେ ପ୍ରକାଶ ପାଇଥାଏ, ତାହା-ହେଲେ ସେଠାରେ ପ୍ରତିବସ୍ତୂପମା ହୁଏ ।

କଳ୍ପ (୩) ବାକ୍ୟଦ୍ୱୟରେ ଗୋଟିଏ ସାଧାରଣ ଧର୍ମ ଭିନ୍ନ ଭଙ୍ଗୀରେ ନିର୍ଦ୍ଦେଶିତ ହୋଇ ଯଦି ବାକ୍ୟଦ୍ୱୟ ମଧ୍ୟରେ ଉପମା ଅର୍ଥାତ୍ ସାଦୃଶ୍ୟର ସୂଚନା ଦିଏ ତାହାହେଲେ ପ୍ରତିବସ୍ତୂପମା ହୁଏ ।

ପ୍ରତିବସ୍ତୂପମା ପାଇଁ ଆବଶ୍ୟକୀୟ ଲକ୍ଷଣ:—

(୧) ଏହା ଦୁଇଟି ବାକ୍ୟର ଅଳଙ୍କାର ହୋଇଥିବ ।

(୨) ବାକ୍ୟ ଦୁଇଟି ସାଦୃଶ୍ୟ ମୂଳକ ହୋଇଥିବ ।

(୩) ସେଥିରେ ଗୋଟିଏ ସାଧାରଣ ଧର୍ମ ଥିବ । ତାହା ଏକାର୍ଥ ବୋଧକ ହେବ ।

(୪) ଏହି ସାଧାରଣ ଧର୍ମଟି ବାକ୍ୟ ଦୁଇଟି ମଧ୍ୟରେ ଭିନ୍ନଭିନ୍ନ ଭାଷା ଭଙ୍ଗୀରେ ପ୍ରକାଶ ପାଉଥିବ, ତେବେ ହେବ ପ୍ରତିବସ୍ତୂପମା ।

ଉଦାହରଣ:—(୧) ନିଜଗୁଣ ଥାଉଁ ପରସଦ୍ ଗୁଣ
ପ୍ରଶଂସାରେ ଜନ ହୋଇ ନିପୁଣ
ନିଜଗୁଣଟିକୁ କରେ ପଳିତ
ଧନୁର୍ଗୁଣେ ଯିମା ଶର ଚଳିତ,(ଚମ୍ପୂକାର)

ବିଶ୍ଳେଷଣ:— ଗୁଣୀଲୋକ ପରର ସାମାନ୍ୟ ସଦ୍‌ଗୁଣ ଥିଲେ ତାକୁ ପ୍ରଶଂସା କରିବା ଦ୍ୱାରା ନିଜର ଗୁଣକୁ ପଳିତ ବା ବିକଶିତ କରେ, ଯେପରି ଶରର ଚଳିତ ଶକ୍ତି ଥିଲେ-ହିଁ ଧନୁର ଗୁଣରେ ଚଳିତ ହୁଏ । ଏଠାରେ ଚଳିତ ଓ ପଳିତ ଏ ଦୁଇଟି ଏକାର୍ଥ

ବୋଧକ ସାଧାରଣ ଧର୍ମ । କିନ୍ତୁ ଭିନ୍ନ ଭିନ୍ନ ଭଙ୍ଗୀରେ ପ୍ରକାଶିତ । ବାକ୍ୟ ଦୁଇଟି ସାଦୃଶ୍ୟ ଗର୍ଭିତ । ତାରଣ ଶ୍ରେଣୀଲୋକ ଯେପରି ସ୍ୱଗୁଣ ପ୍ରଶଂସାରେ ନିଜଗୁଣକୁ ପରିସ୍ଫୁଟ କରେନା ସେହିପରି ଶର ନିଜ ଗୁଣରେ ପରିଗୃହୀତ ନ ହୋଇ ଧନୁର୍ଗୁଣରେ ପରିଗୃହୀତ ହୁଏ । ଏଥିରେ ଆଲୋଚ୍ୟ ଅଳଙ୍କାରର ସମସ୍ତ ଲକ୍ଷଣ ପରିଲକ୍ଷିତ ହୁଏ ।

(୨) କିନ୍ତୁ ରୂପଥିଲେ ପ୍ରଚ୍ଛନ୍ନେ କେବେ ରସିକ ଗ୍ରହେ
ମଧୁଥିଲେ ପୁଷ୍ପେ ପତନେ ଖୋଜି ମଧୁପ ଚାହେ ।

ବିଶ୍ଳେଷଣ :— ଏଠାରେ ପ୍ରକୃତ ବାକ୍ୟ ବା ବସ୍ତୁ "କେବେ ରସିକ ଗ୍ରହେ", ଅପ୍ରକୃତ ବାକ୍ୟ ବା ବସ୍ତୁ "ଖୋଜି ମଧୁପ ଚାହେ ।" ଏ ଦୁଇଟିର ସାଧାରଣ ଧର୍ମ ଗ୍ରହିବା ଓ ଚାହିଁବା । ଅର୍ଥ କିନ୍ତୁ ସମାନ ସୂଚିତ କରିବା, କିନ୍ତୁ ଭିନ୍ନ ଆକାରରେ ପ୍ରକାଶିତ । ତେଣୁ ପ୍ରତିବସ୍ତୂପମା ।

## ଦୃଷ୍ଟାନ୍ତ

ଦୁଇଟି ବାକ୍ୟରେ ଦୁଇଟି ଭିନ୍ନାର୍ଥବୋଧକ ଧର୍ମ ଥାଇ ସୂଚିତ ବାକ୍ୟ ଦୁଇଟି ଯଦି ସାଦୃଶ୍ୟ ଗର୍ଭିତ ହୋଇଥାଏ, ତାହାହେଲେ ଦୃଷ୍ଟାନ୍ତ ଅଳଙ୍କାର ହୁଏ । ଏହି ଅଳଙ୍କାରରେ—

(କ) ଉପମେୟ ଓ ଉପମାନ ଦୁଇଟି ସ୍ୱାଧୀନ ବାକ୍ୟରେ ପ୍ରକାଶିତ

(ଖ) ଉପମେୟ ଓ ଉପମାନର ଧର୍ମ ବିଭିନ୍ନ ହେଲେ ବି ପ୍ରଣିଧାନଗମ୍ୟ ଭାବସାଦୃଶ୍ୟ ପ୍ରତୀତ ହୁଏ ।

(ଗ) ତୁଳନା ବାଚକ ଶବ୍ଦ (ଯଥା, ପରି, ସଦୃଶ) ର ପ୍ରୟୋଗ ହୋଇ ନ ଥାଏ ।

(ଘ) ଉପମାନ ଓ ଉପମେୟ ବାକ୍ୟରେ ବିମ୍ବ ପ୍ରତିବିମ୍ବ ଭାବ ପ୍ରତିପନ୍ନ ହୋଇଥାଏ ।

(ଙ) ଗୋଟିଏ ବାକ୍ୟ ଅନ୍ୟ ବାକ୍ୟ ସହିତ ସମାନ ହୋଇଥାଏ ବାକ୍ୟ ଦୁଇଟି ମଧ୍ୟରେ ବାକ୍ୟ ଦୁଇଟିର ସ୍ୱରୂପ ଭିନ୍ନ ହୋଇଥିଲେ ମଧ୍ୟ ସାଦୃଶ୍ୟ ହେତୁ ଅଭିନ୍ନ ମନେହୁଏ ।

(ଚ) ସାଧାରଣ ଧର୍ମ ପୃଥକ୍ ପୃଥକ୍ ଭାବରେ ପ୍ରଯୁକ୍ତ ହୁଏନାହିଁ

(ଛ) ଏଥିରେ ଦୁଇଟି ଧର୍ମ ଥାଏ । କିନ୍ତୁ ଏହି ଦୁଇ ଧର୍ମ ମଧ୍ୟରେ ଏକ ଭୂର ସାମ୍ୟ ବା ସାଦୃଶ୍ୟ ପରିଲକ୍ଷିତ ହୁଏ ।

ଉଦାହରଣ :—(୧) ବନରେ ଅକାତରେ ଜୀବନ ଘନ,
ଧନ୍ୟ ଯେ ଦାତା ଜାଣେ ଯାଚକ ମନ ।
(ତୁଳସୀ ସ୍ତବକ)

ବିଶ୍ଳେଷଣ :— ଏଠି ମେଘ ଜଳ ବିତରଣ କରିବା ବର୍ଣ୍ଣିତ । କିନ୍ତୁ ଦାତା ଧନ ବିତରଣ କରିବା ଅର୍ଥ ପ୍ରତୀତ, ସ୍ପଷ୍ଟିଧାନଗମ୍ୟ କୌଣସି ଉପମାବାଚକ ଶବ୍ଦର ଉଲ୍ଲେଖ ନାହିଁ । ତେଣୁ ଦୃଷ୍ଟାନ୍ତ ।

(୨) ତେଜ ସଂଭାଷଣ ବାରିଲେ ବାରଣ
ମାନେ କି ପ୍ରେମିକ ମନ
ସୂକ୍ଷ୍ମକୁ ସ୍ଥଳରେ ପଥ ଓଗାଳିଲେ
ସ୍ଥଳକି ଚହିଁ ଭଙ୍ଗନ । (କେ: ଗୌ:)

ବିଶ୍ଳେଷଣ :— ଏଠାରେ ବାରଣ ନ ମାନିବା ଓ ପଥ ଓଗାଳିବାରେ ସମର୍ଥ ନ ହେବା ଦୁଇଟି ଭିନ୍ନାର୍ଥବୋଧକ ଧର୍ମ, କିନ୍ତୁ

ବାକ୍ୟ ଦୁଇଟି ସାଦୃଶ୍ୟ ନିର୍ଭର । କାରଣ ଚେପଣ ସ୍ୱକ୍ଷକୁ ସୁକ-ଦ୍ୱାରା ପଥ ଛିଦ୍ର କରିବାଇ ମାରେ ସେହିପରି ନିର୍ଭର ସମ୍ମାନଣର ବାକ୍ୟ ଦ୍ୱାରା ପ୍ରେମିକର ମନକୁ ଅବରୁଦ୍ଧ କରା-ନାଇ ନ ପାରେ । ଏଥିରେ କୌଣସି ଉପମା ବାଚକ ଶବ୍ଦ ନାହିଁ । ତେଣୁ ଦୃଷ୍ଟାନ୍ତ ।

## ପ୍ରତିବସ୍ତୁପମା ଓ ଦୃଷ୍ଟାନ୍ତର ପାର୍ଥକ୍ୟ :—

ସାମ୍ୟ—

(୧) ଦୁଇଟି ସ୍ୱାଧୀନ ବାକ୍ୟର ଅଳଙ୍କାର ।

(୨) ବାକ୍ୟ ଦୁଇଟିରେ ଥିବା ସାଦୃଶ୍ୟ ନିର୍ଭର ବା ଉପମା-ତ୍ମକ ସମ୍ପର୍କ ସ୍ପଷ୍ଟ ନୁହେଁ, ପ୍ରତୀୟମାନ ।

(୩) ସାଦୃଶ୍ୟ ସ୍ପଷ୍ଟ ନୁହେ । କାରଣ ବାକ୍ୟ ମଧ୍ୟରେ କୌଣସି ଉପମା ବାଚକ ଶବ୍ଦ ନାହିଁ । ଥିଲେ ସେଗୁଡ଼ିକ ଦୁଇଟି ସ୍ୱତନ୍ତ୍ର ବାକ୍ୟ ନ ହୋଇ ଏକ ବାକ୍ୟ ହୋଇ ଥାଆନ୍ତା ।

(୪) ସାଧାରଣ ଧର୍ମର ଉଲ୍ଲେଖ ଦୁଇଟି ବାକ୍ୟରେ ଥାଏ । କିନ୍ତୁ ପୃଥକ ଭାବରେ ।

ବୈଷମ୍ୟ—

(୧) ପ୍ରତିବସ୍ତୁପମାରେ ଉପମେୟ ଓ ଉପମାନର ଧର୍ମ ଏକ । ଦୃଷ୍ଟାନ୍ତରେ ଧର୍ମ ଦୁଇ ।

(୨) ପ୍ରତିବସ୍ତୁପମାରେ ଉପମେୟରେ ପ୍ରକାଶିତ ଧର୍ମଟି ଉପମାନରେ ଭିନ୍ନ ଆକାରରେ ପ୍ରକାଶିତ ହୁଏ ।

(୩) ଧର୍ମର ଐକ୍ୟ ପ୍ରତିବସ୍ତୁପମାରେ ମୂଲ୍ୟବାନ । ଦୃଷ୍ଟାନ୍ତରେ ଧର୍ମର ଦୁଇଟିର ଏକ ତୁଲ୍ୟ ସାଦୃଶ୍ୟ ପ୍ରତୀତ ହୁଏ ।

(୪) ଦୃଷ୍ଟାନ୍ତରେ କୌଣସି ଉପମାବାଚକ ଶବ୍ଦର ପ୍ରୟୋଗ ନ ଥାଏ, ଏଥିପାଇଁ ଏହା ଉପମାଠାରୁ ପୃଥକ । ଦୃଷ୍ଟାନ୍ତରେ ସାମାନ୍ୟ ବିଶେଷ ଭାବ ନ ଥାଏ । ତେଣୁ ଏହା ଅର୍ଥାନ୍ତର ନ୍ୟାସ ଠାରୁ ଭିନ୍ନ ।

(୫) ଏହା ମଧ୍ୟ ନିଦର୍ଶନା ଠାରୁ ଭିନ୍ନ । କାରଣ ନିଦର୍ଶନାରେ ସାଧାରଣ ଧର୍ମର ପ୍ରୟୋଗ ହୁଏ ନାହିଁ । କେବଳ ଦୁଇଟି ବାକ୍ୟ ମଧ୍ୟରେ ଆପାତ ସମ୍ବନ୍ଧ ଥାଏ । ତେଣୁ ଦୃଷ୍ଟାନ୍ତ ନିଦର୍ଶନା ନୁହେଁ ।

## ନିଦର୍ଶନା

ଯେଉଁଠି ବସ୍ତୁଦ୍ୱୟର ଅସମ୍ଭବ ବା ସମ୍ଭବ ସମ୍ବନ୍ଧ ଥାଇ ଅର୍ଥ ସଙ୍ଗତି ନିମନ୍ତେ ଉପମେୟ, ଉପମାନ ଭାବ ବା ସାଦୃଶ୍ୟ ଜଣାଯାଏ ସେଠି ନିଦର୍ଶନା ଅଳଙ୍କାର ହୁଏ । ସଂକ୍ଷେପରେ କହିବାକୁ ଗଲେ ଯେଉଁଠାରେ ବାକ୍ୟଦ୍ୱୟର ଅର୍ଥ ସଂଗତି ନିମନ୍ତେ ସାଦୃଶ୍ୟ ଜଣାପଡ଼ିଥାଏ, ସେଠାରେ ନିଦର୍ଶନ ଅଳଙ୍କାର ହୁଏ । ଏହି ଅଳଙ୍କାର ସମ୍ପର୍କରେ ନିମ୍ନୋକ୍ତ ବିଷୟଗୁଡ଼ିକ ବିଶେଷ ଲକ୍ଷଣୀୟ ।

(୧) ବସ୍ତୁ :— ଏହାର ଅର୍ଥ ପଦ, ବାକ୍ୟ ବା ଉପବାକ୍ୟ । ନିଦର୍ଶନା ଏକ ବାକ୍ୟର ଅଳଙ୍କାର । ଦୁଇଟି ସ୍ୱାଧୀନ ବାକ୍ୟର ନୁହେ ।

ବସ୍ତୁଦ୍ୱୟର ସମ୍ବନ୍ଧ :— କବିର ଯାହା ବର୍ଣ୍ଣନୀୟ ବିଷୟ ବା ପ୍ରକୃତ ସହିତ କବିର ଅବର୍ଣ୍ଣନୀୟ ବା ଅପ୍ରକୃତର ସମ୍ପର୍କକୁ ବସ୍ତୁଦ୍ୱୟର ସମ୍ପର୍କ କୁହାଯାଏ ।

ଅସମ୍ଭବ ସମ୍ବନ୍ଧ :— ବାକ୍ୟ ମଧ୍ୟରେ ପ୍ରକାଶ ପାଉଥିବା ଏକ ପ୍ରକାର ସମ୍ପର୍କ ଯାହା କି ସାଧାରଣରେ ପରିଚିତ ନୁହେଁ । ତେଣୁ ଅସମ୍ଭବ ରୂପେ ପ୍ରତୀୟମାନ ଦୃଷ୍ଟାନ୍ତକୁ ଅସମ୍ଭବ ସମ୍ବନ୍ଧ କୁହାଯାଏ ।

ସମ୍ଭବ ସମ୍ବନ୍ଧ :— ଯେଉଁ ଦୃଷ୍ଟାନ୍ତ ସାଧାରଣରେ ପରିଚିତ ତାହାକୁ ସମ୍ଭବ ସମ୍ବନ୍ଧ କହନ୍ତି ।

ଅର୍ଥ ସଂଗତ ଓ ସାଦୃଶ୍ୟ :— ଉପମେୟ, ଉପମାନର ସମ୍ବନ୍ଧ ସମ୍ଭବ ହେଉ ବା ଅସମ୍ଭବ ହେଉ ତାଙ୍କ ମଧ୍ୟରେ ଏକ ସାମ୍ୟ ସ୍ୱତଃ ଥାଏ, ତାହାହିଁ ସାଦୃଶ୍ୟ । ଏ ସାଦୃଶ୍ୟ ଅର୍ଥ-ସଙ୍ଗତ ରହିବାପାଇଁ ଅଭିପ୍ରେତ ।

ଯେହେତୁ ଏହି ଅଳଙ୍କାରରେ ଅସମ୍ଭବ ଓ ସମ୍ଭବ ସମ୍ବନ୍ଧର ଉଲ୍ଲେଖ ଅଛି ତେଣୁ ଅଳଙ୍କାରଟି ଦୁଇ ପ୍ରକାର ।

ଅସମ୍ଭବ ବସ୍ତୁସମ୍ବନ୍ଧ ନିଦର୍ଶନା :—

(କ) ଏହି ଯେ ତୋ ନୀଳ ବକ୍ଷ ତାରକିତ
ଜଳ ବହଇନ୍ତି ହଂସ ଅଗଣିତ । (ଚିଲିକା)

ବିଶ୍ଳେଷଣ :— ଏଥିରେ ଚିଲିକାରେ ହଂସମାନଙ୍କର ବିହାରହିଁ ବର୍ଣ୍ଣନୀୟ ବିଷୟ ବା ପ୍ରକୃତ । ନୀଳ ଆକାଶରେ ତାରାଙ୍କ ବିହାର ଅବର୍ଣ୍ଣନୀୟ ବା ଅପ୍ରକୃତ । ଦୁଇଟି ବସ୍ତୁର ସମ୍ବନ୍ଧ 'ତାରକିତ' ପଦ ଦ୍ୱାରା ସ୍ଥାପିତ । ଯଦି ଏଠି ତାରକିତ ପଦଟିକୁ ପ୍ରଶ୍ନ କରା-ଯାଏ, ହଂସମାନେ ଚିଲିକା ବକ୍ଷକୁ ତାରକିତ କରିବା ସମ୍ଭବ କି ? ତାହା ସମ୍ଭବ ନୁହେଁ । ତେଣୁ ଏହି ତାରକିତ ପଦଦ୍ୱାରା ନୀଳ ଆକାଶରେ ତାରା ଓ ଚିଲିକା ବକ୍ଷରେ ହଂସ ମଧ୍ୟରେ

ସ୍ଥାପିତ ସମ୍ବନ୍ଧ ; ଅସମ୍ଭବ ବସ୍ତୁର ସମ୍ବନ୍ଧ । ଏମାନଙ୍କ ଭିତରେ ସାଦୃଶ୍ୟ ନାହିଁ । ନୀଳ ଆକାଶରେ ତାରା, ଶଙ୍ଖଧାର ନୀଳ ବକ୍ଷରେ ହଂସ ।

(ଖ) ଏ ବାଳାକୁ ବନ ବାସ ସୁହାଇଲେ

ବଧି ଅହା କି ଭଗୃରେ ?

ଶମୀ ଛେଦିବାକୁ ଲୋଡ଼ିଲେ ମିନା ନେଇ

ନୀଳୋତ୍ପଳ ଦଳ ଧାରେ । (ଉପାଭ ଭଞ୍ଜ)

ବିଶ୍ଳେଷଣ :— ଏଠାରେ ବାଳା— ବିମଳାର ବନବାସ ବର୍ଣ୍ଣନୀୟ ବା ପ୍ରକୃତ । ତଦ୍ଦ୍ୱାରାଜରେ ଶମୀବୃକ୍ଷ ଛେଦନ ଅପ୍ରକୃତ ବା ଅବର୍ଣ୍ଣନୀୟ । ନୀଳୋତ୍ପଳ ଦଳଧାର ଦ୍ୱାରା ଶମୀବୃକ୍ଷ ଛେଦନ ସମ୍ଭବ କି ? ସେପରି ବିମଳାପରି ବାଳା ହେଲରେ ବନବାସ ସୁହର ବା ସମ୍ଭବ କି ? ଅସମ୍ଭବ ପ୍ରତୀତ । ତେଣୁ ଏହି ବସ୍ତୁ-ଦ୍ୱୟ ମଧ୍ୟରେ ସ୍ଥାପିତ ସମ୍ପର୍କ ଅସମ୍ଭବ ବସ୍ତୁ ସମ୍ବନ୍ଧ ସମ୍ପର୍କର ନିଦର୍ଶନା ।

## ସମ୍ଭବ ବସ୍ତୁ ସମ୍ବନ୍ଧ ନିଦର୍ଶନା :-

(କ) ପର ପୀଡାକାରୀ କେଉଁ ଜନ ଏ ସଂସାରେ

ଶେଷେ ଦିନ ସୁଖ ଭୋଗ କରଇ ନ ପାରେ

ଜଣାଇ ଏ ଭାବ ସନ୍ଧ୍ୟା ମୁଖେ ଦିବାକର

ଅଶେଷ କରନ୍ତି ଅସ୍ତ ପର୍ବତ ଶିଖର ।

ବିଶ୍ଳେଷଣ : — ଏଠାରେ ମୂର୍ଖଙ୍କର ଅସୁବିଧା ବର୍ଣ୍ଣନୀୟ ବା ପ୍ରକୃତ ବସ୍ତୁ ( ଉପମେୟ ) କିମ୍ବା ଦିବାକରଙ୍କର ଅସ୍ତ ଦୁଃଖ ଭୋଗ କରିବା । ପରପୀଡାକାରୀ ଜନର ଦୁଃଖଭୋଗ ଅବର୍ଣ୍ଣନୀୟ ବା ଅପ୍ରକୃତ । 'ଭୋଗ କରିବା' କ୍ରିୟା ଦ୍ୱାରା ଏହି ବସ୍ତୁ ଦୁଇଟି

ସଂଯୁକ୍ତ । ପରପୀଡ଼ାକାରୀ ଲୋକ ଯେପରି ଚିରଦିନ ସୁଖଭୋଗ କରି ପାରେନା, ସୂର୍ଯ୍ୟ ସେହିପରି ଅସ୍ତାଚଳରେ ଚିରଦିନ ସୁଖ-ଭୋଗ କରୁ ନ ଥାନ୍ତି, ଏ ଦୁଇଟି ସମ୍ଭବ ବସ୍ତୁ । ତେଣୁ ଏଠାରେ ଥିବା ନିଦର୍ଶନା ସମ୍ଭବ ବସ୍ତୁ ସମ୍ବନ୍ଧ ନିଦର୍ଶନା ।

## ନିଦର୍ଶନା ଓ ଦୃଷ୍ଟାନ୍ତ ମଧ୍ୟରେ ଥିବା ଭେଦ

(୧) ଦୃଷ୍ଟାନ୍ତରେ ଉପମାନ ବା ଅପ୍ରକୃତକୁ ଉପେକ୍ଷା କରାଯାଇପାରେ କିନ୍ତୁ ଏପରି ଘଟେନା— ପ୍ରକୃତ ବା ଉପ-ମେୟର ମୂଲ୍ୟ ସେହିପରି ଅକ୍ଷୁଣ୍ଣ ଥାଏ । କିନ୍ତୁ ନିଦର୍ଶନାରେ ଉପମାନକୁ ବର୍ଜନ କରିବା ଅସମ୍ଭବ । କାରଣ ତାହା ଉପମେୟ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଦୃଷ୍ଟାନ୍ତରେ ଉପମେୟ ମୂଲ୍ୟବାନ, ନିଦର୍ଶନାରେ ଉପମାନ ମୂଲ୍ୟବାନ ।

(୨) ଦୃଷ୍ଟାନ୍ତରେ ପ୍ରକୃତ ଅପ୍ରକୃତ ବସ୍ତୁ ବା ଉପମେୟ, ଉପମାନ ଦୁଇଟି ସ୍ୱତନ୍ତ୍ର ସ୍ୱାଧୀନ ବାକ୍ୟରେ ଉଲ୍ଲିଖିତ ହୋଇ-ଥାଏ । ବାକ୍ୟ ଦୁଇଟିର ଉଲ୍ଲେଖ ପରେ ତା ମଧ୍ୟରୁ ଏକ ଦୂରଗତ ଭାବସାଦୃଶ୍ୟ ଆବିଷ୍କାର କରାଯାଏ । କିନ୍ତୁ ନିଦର୍ଶନା ଏକ ବାକ୍ୟର ଅଳଙ୍କାର । ଦୁଇ ସ୍ୱତନ୍ତ୍ର ବାକ୍ୟର ନୁହେଁ । ଏଥିରେ ପ୍ରଥମେ ସାଦୃଶ୍ୟ ବୋଧ ଆଣାଯାଇ ପରେ ତତ୍-ସମ୍ବନ୍ଧୀୟ ବାକ୍ୟର ଉତ୍ପତ୍ତି କରାଯାଏ ।

ମୁଖ୍ୟତଃ ନିଦର୍ଶନା ଏକ ବାକ୍ୟର ଅଳଙ୍କାର ଦୃଷ୍ଟାନ୍ତ ଦୁଇ ସ୍ୱାଧୀନ ବାକ୍ୟର, ସାଦୃଶ୍ୟ ଦୃଷ୍ଟାନ୍ତରେ ପ୍ରତୀୟମାନ । ନିଦର୍ଶନାରେ ସ୍ପଷ୍ଟ ଓ ଉଦ୍ଭୂତ ଭାବେ ସୃଷ୍ଟି ।

## ନିଶ୍ଚୟ

ଉପମାନକୁ ନିଷେଧ କରି ଉପମେୟକୁ ପ୍ରତିଷ୍ଠା କଲେ ନିଶ୍ଚୟ ଅଳଙ୍କାର ହୁଏ । ଏହି ଅଳଙ୍କାରଟି ଅପହ୍ନୁତିର ବିପରୀତ ।

ଉଦାହରଣ :— ଧରି ମନ ଚାହିଁ ଦେଖିଲ
ନୁହେ କପୋତ ସ୍ୱନ
ନୁହଁଇ କୋକିଳ କାକଳି
କିମ୍ବା ବୀଣା ନିକ୍ୱଣ
ନୁହେଁ ଶଙ୍ଖନାଦ ନୁହଇ
ଧ୍ୱନି ମୟୂର କେକା
ଲଳନା- ଚତୁର କଣ୍ଠର
ସ୍ୱର- ନିର୍ଝର ଏକା ।
(ତପସ୍ୱିନୀ)

ବିଶ୍ଳେଷଣ :— ବାଲ୍ମୀକି ଆଶ୍ରମ ନିକଟରେ ସୀତାଙ୍କର କ୍ରନ୍ଦନ ଧ୍ୱନି ଶୁଣି ମୁନିକନ୍ୟାମାନଙ୍କ ମନରେ ବିଭିନ୍ନ ଧାରଣା ଜାତ ହୋଇଛି । ତାଙ୍କ କ୍ରନ୍ଦନ ଧ୍ୱନିକୁ କପୋତ ସ୍ୱନ, କୋକିଳର କାକଳି, ବୀଣାର ଝଙ୍କାର, ଶଙ୍ଖନାଦ, ମୟୂର ଡାକ ଇତ୍ୟାଦି ବିଭିନ୍ନ ଭାବରେ ଧାରଣା କରିଛନ୍ତି । କିନ୍ତୁ ଶେଷରେ ତାହା ଏକ ଲଳନାର କଣ୍ଠସ୍ୱର ବୋଲି ନିଶ୍ଚିତ ଧାରଣା ଆସିଛି । ତେଣୁ ଏହି ଅଳଙ୍କାର ହେଲ ।

## ସମାସୋକ୍ତି

ସମାନ କାର୍ଯ୍ୟ, ଲିଙ୍ଗ ଓ ବିଶେଷଣ ଦ୍ୱାରା ଯଦି ପ୍ରସ୍ତୁତ ବା ପ୍ରକୃତ ବୃତ୍ତାନ୍ତରୁ ଅପ୍ରସ୍ତୁତ ବା ଅପ୍ରକୃତର ପ୍ରତୀତି ଜନ୍ମେ, ତାହାହେଲେ ହୁଏ ସମାସୋକ୍ତି ।

ରୂପକ ଓ ସମାସୋକ୍ତି :— ରୂପକରେ ମଧ୍ୟ ପ୍ରସ୍ତୁତ ଉପରେ ଅପ୍ରସ୍ତୁତର ଆରୋପ ହୋଇଥାଏ । ସମାସୋକ୍ତି ଓ ରୂପକ ମଧ୍ୟରେ ଆରୋପର କଥା ଉଲ୍ଲେଖ ଥିଲେ ମଧ୍ୟ ଅନେକ ପାର୍ଥକ୍ୟ ବିଦ୍ୟମାନ । ରୂପକରେ ଅପ୍ରସ୍ତୁତ ସ୍ୱୟଂ ଆରୋପିତ ହୁଏ । କିନ୍ତୁ ସମାସୋକ୍ତିରେ ଅପ୍ରସ୍ତୁତ ବୃତ୍ତାନ୍ତ ପ୍ରତୀୟମାନ ହୁଏ । ରୂପକରେ ଅପ୍ରସ୍ତୁତ ବସ୍ତୁ ଆରୋପ ସୁଯୋଗ ଲାଭ କରି ପ୍ରକୃତକୁ ଆଚ୍ଛନ୍ନ କରିଦିଏ । କିନ୍ତୁ ସମାସୋକ୍ତିରେ ପ୍ରସ୍ତୁତ ବସ୍ତୁଟି ବାଚ୍ୟ ପାନ ଅପ୍ରସ୍ତୁତଟି ପ୍ରତୀୟମାନ । ଆରୋପିତ ବ୍ୟବହାରରୁ ଅପ୍ରସ୍ତୁତ ବସ୍ତୁ ପ୍ରତୀୟମାନ ହୁଏ । ତେଣୁ ଯାହା ରୂପକ ତାହା ସମାସୋକ୍ତି ନୁହେଁ । ତଳେ ସମାସୋକ୍ତିର କେତୋଟି ଉଦାହରଣ ଦିଆଗଲା ।

ସମାନ କାର୍ଯ୍ୟଦ୍ୱାରା :—

ଉ: ହ:—

ଏ ଅନ୍ଧ ଅନନ୍ତ ଯେବେ ମହା ସେନାପତି
କଳିର କାଲ୍‌କୂଟ ଧରେ, ସମସ୍ତଙ୍କୁ ଘେନି
ପ୍ରଚଣ୍ଡ ବିକ୍ରମେ କଲି ଅକମିଲ ଆସି

× × ×

ଆସୁଛି ପାମର ବନ୍ୟା ଭାରତ ଭରସା
ପାପଙ୍କଳେ ଦ୍ୱୀପ ରୂପୀ ମହତ ଯେ ଜନ
ବୁଡ଼ିଯିବ ସିନା, ଆଧା ଏ ଘୋର ପ୍ଳାବନେ

(ମହାଯାତ୍ରା)

ବିଶ୍ଳେଷଣ :— ମନ୍ଦ ପ୍ରକୃତିର ରାଜା ରାଜ୍ୟ ଶାସନ କଲେ ଅନ୍ୟାୟ ଓ ପାପର ଟାଡ ଯେପରି ବଢ଼ିଯାଏ, ସେହିପରି ପାପ ଓ ଅତ୍ୟାଚାରର ମାତ୍ରା କଳିଯୁଗରେ ବୃଦ୍ଧି ପାଇଥିବା ହେତୁ ମହାଯାତ୍ରାରେ କଳିକୁ ଏକ ମନ୍ଦ ପ୍ରକୃତିର ରାଜା ରୂପେ ବର୍ଣ୍ଣନା କରାଯାଇଛି ।

ସମାନ ଧର୍ମ ଥାଇ ପ୍ରାସଙ୍ଗିକ ବସ୍ତୁରୁ ଅପ୍ରାସଙ୍ଗିକ ବ୍ୟବହାର ପ୍ରତୀତ ହେଉଥିବାରୁ ସମାସୋକ୍ତି ଅଳଙ୍କାର ହେଉଛି ।

ସମାନ ଲିଙ୍ଗ ଦୃଷ୍ଟିରୁ :—

ଉ: ଦ: — ପଶିଲା ଏବେ ତୋ ଶ୍ରବଣେ
ସାଗର ଦୋଷ ସ୍ନେହ ଭଣେ
ଉଲ୍ଲାସେ ଉନ୍ମାଦିନୀ ହେଲୁ ହୃଦ ତଟିନୀ
ଧାଇଁଲୁ ସାଗର ସଦନେ । ('ନଦୀପ୍ରତି' ମଧୁସୂଦନ)

ବିଶ୍ଳେଷଣ :— ଏଠାରେ ସାଗର ପୁଂଲିଙ୍ଗ, ନଦୀ ସ୍ତ୍ରୀଲିଙ୍ଗ । ସାଗରର ଆହ୍ୱାନରେ ଉନ୍ମାଦିନୀ ନଦୀର ସାଗର ସଦନକୁ ଗମନ ବୃତ୍ତାନ୍ତରୁ ନାୟକ ନାୟିକାର ସମ୍ବନ୍ଧ ପ୍ରତୀତ ହେଉଥିବାରୁ ସମାସୋକ୍ତି ଅଳଙ୍କାର ହେଲା ।

**କାର୍ଯ୍ୟ, ଲିଙ୍ଗ ଓ ବିଶେଷଣ ଦ୍ୱାରା :—**

ଉ:ଦ:— ଚନ୍ଦ୍ରିକାଲିଙ୍ଗନ ସୁଖେ ପ୍ରଫୁଲ୍ଲିତ
ହୃଦୟ ସରିତ ପତି ।
ସରିତଙ୍କ ପ୍ରତି ଅନାଦର କରି
ଠେଲିଦେଲା ପଛକତି । (କୀଚକ ବଧ)

ବିଶ୍ଳେଷଣ :— ସମୁଦ୍ରରେ ଜୁଆର ହେତୁ ସମୁଦ୍ର ସମ୍ପର୍କିତ ନଦୀଗୁଡ଼ିକ ପଛକୁ ଫେରିଗଲେ । ଏହାର ଏକ ଚମତ୍କାର ବର୍ଣ୍ଣନା ଏଠାରେ ପ୍ରଦତ୍ତ । ଚନ୍ଦ୍ରିକା ଯେହେତୁ ସମୁଦ୍ରକୁ ଆଲିଙ୍ଗନ କଲା ସେହିହେତୁ ସାଗର ନଦୀମାନଙ୍କୁ ଅନାଦର କରି ପଛକୁ ଠେଲି ଦେଲା । ଏଥିରୁ ଏକ ପୁରୁଷ, ଏକ ସ୍ତ୍ରୀ ପ୍ରତି ଆସକ୍ତ ହେଲେ ଅନ୍ୟମାନଙ୍କୁ ଅନାଦର କରିବାର ବୃତ୍ତାନ୍ତ ପ୍ରତୀୟମାନ । ଚନ୍ଦ୍ରିକା ଓ

ସରିତ' ସ୍ତ୍ରୀଲିଙ୍ଗ, ସମୁଦ୍ର ପୁଂଲିଙ୍ଗ, ଅନାଦର କରିବା କାର୍ଯ୍ୟ ଏବଂ 'ପ୍ରଫୁଲ୍ଲିତ ହୃଦୟ' ବିଶେଷଣ । ତେଣୁ ସମାସୋକ୍ତି ଅଳଙ୍କାର ହେଲା ।

## ଅତିଶୟୋକ୍ତି

ଯେଉଁଠାରେ ଉପମେୟର ଉଲ୍ଲେଖ ନ କରି ଯଦି କେବଳ ଉପମାନର ଉଲ୍ଲେଖ କରାଯାଇଥାଏ । ସେଠାରେ ଅତିଶୟୋକ୍ତି ଅଳଙ୍କାର ହୁଏ । ଅବଶ୍ୟ ଉତ୍ପ୍ରେକ୍ଷାରେ ଏହି ଉପମାନ ଓ ଉପମେୟର ସମ୍ବନ୍ଧ ପରିଦୃଷ୍ଟ ହୋଇଥାଏ ।

**ଉତ୍ପ୍ରେକ୍ଷା ଓ ଅତିଶୟୋକ୍ତି :—** ଉତ୍ପ୍ରେକ୍ଷାରେ ଉପମେୟର ଉଲ୍ଲେଖ ଥାଇ ତାହା ଉପମାନ ଠାରୁ ଅଭିନ୍ନ ବୋଲି କୁହା ଯାଇଥାଏ । ଅତିଶୟୋକ୍ତିରେ ଉପମେୟର ଆଦୌ ଉଲ୍ଲେଖ ନ ଥାଏ । ଅତିଶୟୋକ୍ତିର କେତୋଟି ଉଦାହରଣ ତଳେ ଦିଆଗଲା ।

ଉ:ହ:— (କ) ମଞ୍ଜୁରମା- କାଞ୍ଚୀକ୍ଷେମା- ସ୍ନାନେ ଭୂତା
କାଞ୍ଚୀକ୍ଷେମା- ବେଣୀ ପ୍ରଭ ବେଣୀ ଯୁତା ।

(ଦରବାର)

ବିଶ୍ଳେଷଣ :— ଏଠାରେ ମହାନଦୀର ଜଳଧାରର ବର୍ଣ୍ଣନା କରା ଯାଇଛି । ମହାନଦୀର ଗ୍ରୀଷ୍ମକାଳୀନ ଜଳଧାର କାଞ୍ଚୀକ୍ଷେମା ପଦ୍ମାବତୀଙ୍କ ବେଣୀପରି । ଏହି ବର୍ଣ୍ଣନାରେ ଉପମେୟ ମହାନଦୀର ଉଲ୍ଲେଖ ନ ଥାଇ ଉପମାନର ଉଲ୍ଲେଖ ଥିବାରୁ ଏଠାରେ ଅତିଶୟୋକ୍ତି ଅଳଙ୍କାର ହେଲା ।

(ଖ) ମଗଧେ ଚୈଦ୍ୟଲେ ଅଙ୍ଗେ, ବଙ୍ଗେ, ପୃଷ୍ଠି
ଦେଖିଛୁ ଯେତେ ସୁନ୍ଦରୀ
ଏ ଯୋଷା ଚରଣ ଦଶା ପଟଳକୁ
ନୋହିବେଟି କେହି ସରି ।
(ଯଯାତି କେଶରୀ)

ବିଶ୍ଳେଷଣ :— ଉପମାର ରୂପ ବର୍ଣ୍ଣନା ଏଠାରେ ମୁଖ୍ୟ । ଉପମା ଉପମେୟର ଉଲ୍ଲେଖ ନ ଥାଇ, ଅନ୍ୟ ସମସ୍ତ ସୁନ୍ଦରୀ ଉପମାନଙ୍କର ଉଲ୍ଲେଖ ଥିବାରୁ ଅତିଶୟୋକ୍ତି ହୋଇଛି ।

## ବିରୋଧ ମୂଳକ ଅଳଙ୍କାର

ବିରୋଧାଭାସ :— ପଦ ବା ବାକ୍ୟ ମଧ୍ୟରେ ଶବ୍ଦ ବିନ୍ୟାସ ଏପରି ହୋଇଥାଏ ଯେ ତାହା ଶୁଣିଲେ ପରସ୍ପର ବିରୋଧି ଅର୍ଥ ପ୍ରତୀତ ହେଲପରି ମନେ ହୁଏ । କିନ୍ତୁ ପ୍ରକୃତରେ ବିରୁଦ୍ଧ ଅର୍ଥ ପ୍ରତୀତ ହୁଏ ନାହିଁ । ଏପରି କ୍ଷେତ୍ରରେ ବିରୋଧାଭାସ ବା ବିରୋଧ ଅଳଙ୍କାର ହୁଏ । ଗୁଣ ବା କ୍ରିୟାଦିର ପରସ୍ପର ବିରୁଦ୍ଧ ଭାବ ବର୍ଣ୍ଣିତ ହୋଇଥିବା ହେତୁ ଏହି ଅଳଙ୍କାର ହୁଏ ।

ଉ:ହ:—(୧) ତୁମ୍ଭେ ସ୍ଥୂଳ ତୁମ୍ଭେ ସୂକ୍ଷ୍ମ ତୁମ୍ଭେ ଲଘୁ ଗୁରୁ
ତୁମ୍ଭେ କାର୍ଯ୍ୟ କାରଣ ସ୍ୱରୂପ ତୁମ୍ଭେ ସର୍ବ ଗୁରୁ ।

(୨) କାନ୍ତଗତ ଅଛୁଇ ନାହିଁ ତ କାନ୍ତ ଗତ
ଇଚ୍ଛଇ ମୂରତ ତ ନ ଇଚ୍ଛଇ ମୁଁ ରତ
ଅଛି ଧିଆନରେ ବନ୍ଧୁ ନାହିଁ ଧୀ ଆନରେ
ବିଶେଷ ଅନାଥରେ ମୁଁ ନ ବସେ ଅନାଥରେ ।
(ବ: ଚନ୍ଦ୍ରାମଣି)

ବିଶ୍ଳେଷଣ :— ଏଠାରେ ଆପାତତଃ ଚନ୍ଦ୍ରଙ୍କ ଅର୍ଥ ପ୍ରକାଶ ପାଇଲା ପରି ମନେ ହେଲେ ମଧ୍ୟ ପ୍ରକୃତରେ ବିରୁଦ୍ଧ ଅର୍ଥ ପ୍ରକାଶ ପାଉ ନାହିଁ । ତେଣୁ ଏହା ଅଳଙ୍କାର ହେଲା ।

## ବିଭାବନା

କାରଣ ବିନା କାର୍ଯ୍ୟର ଉତ୍ପତ୍ତି ହେଲେ ବିଭାବନା ଅଳଙ୍କାର ହୁଏ । ଏହା ଏକ ବିରୋଧ ମୂଳକ ଅଳଙ୍କାର । କାରଣାଭାବାତ୍ କାର୍ଯ୍ୟୋଦ୍ଭବଃ ଅର୍ଥାତ୍ ବିନା କାରଣେ କାର୍ଯ୍ୟ ଉତ୍ପତ୍ତି ଏହାର ମୂଳ ସୂତ୍ର ।

ଉଦାହରଣ :—(୧) ନୁହେଁ ଚନ୍ଦ୍ର କର କରେ ଆହ୍ଳାଦ
ଅମ୍ଳନ ନୁହେଁ ଯେ ଚନ୍ଦ୍ର ସୁଅଦ
ଚିନ୍ତା ନୁହେଁ ଜାତ କରେ ବିଷାଦ
ବର୍ତ୍ତାଏ ଗୌରବ ନୁହେଁ ସମ୍ପଦ । ( ବି: ଶ: )

(୨) ଅନଳ ନୁହଇ ଦେହ ଦହଇ
ଅସ୍ତ୍ର ନୁହଇଁ ମରମେ ଭେଦଇ
ନୁହଇ ତ ଜଳ ବୁଡ଼ାଏ କୂଳ
ନୁହଇ ମାଦକ କରେ ବିହ୍ୱଳ । (ବି: ଚନ୍ଦ୍ରାମଣି)

(୩) ନେଁ ବୋଲଇ ମୁହିଁ ଅଛଇ ଧୂଳସ
ବିନା ମେଘେ ସୃଜ ପାରଇ କୁଳଶ (ଦରବାର)

ବିଶ୍ଳେଷଣ :— ଉପରୋକ୍ତ ତିନୋଟି ଉଦାହରଣରେ କାରଣ ନ ଥାଇ କାର୍ଯ୍ୟର ଉତ୍ପତ୍ତି ହେଉଥିବାରୁ ଏହା ଅଳଙ୍କାର ହେଲା ।

## ବିଶେଷୋକ୍ତି

କାରଣ ଥାଇ କାର୍ଯ୍ୟର ଅଭାବ ଦୃଷ୍ଟିରେ ବା ଉକ୍ତି ନ ହେଲେ ବିଶେଷୋକ୍ତି ଅଳଙ୍କାର ହୁଏ ।

ଉଦାହରଣ :—(୧) କଳ୍ପଲତା ମୂଳେ ବସି ହେବ ଉପବାସୀ
ତୃଷାରେ ମାରିବେ ରହି ସୁରଧୁନୀ ତୀରେ
ଦର୍‌ଭଙ୍ଗୀ ଆର୍ଯ୍ୟ ସିଂହ ଔରସେ ଜନମି
ହେଲ କି ଅକ୍ଷମ ଆହା ନିଜସ୍ୱ ରକ୍ଷଣେ ?

(୨) ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ ଅନ୍ଧ ଚକ୍ଷୁ ଥାଇ
ହେଲେହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତ
ଦରଶି ହୃଦନ୍ତ୍ର ଆହା ମହାଘୋର ତମେ
ଦୀପସତ୍ତ୍ୱେ, ମମତାଈ ଦୁଃସ୍ଥଦୈନ୍ୟ ବନ୍ଧନେ ।

( ମହାଯାତ୍ରା )

(୩) ଘୋର ନବଘନ ଯାଉଁ ଯେବେ ଦୀନ ଚାତକ ଜୀବନ ହରାଇବ
ସମୁଦ୍ରେ କରନ୍ତି ଘୋର ଜଳବର୍ଷି ଚାତକ ବନ୍ଧୁ କି ବୋଲାଇବ

ବିଶ୍ଳେଷଣ :— ଏହି ଉଦାହରଣ ଗୁଡ଼ିକରେ କାରଣ ଥିବା ସତ୍ତ୍ୱେ କାର୍ଯ୍ୟର ଅଭାବ ପରିଲକ୍ଷିତ ହେଉଛି ।

## ଅସଙ୍ଗତି

ଯେଉଁ ସ୍ଥାନରେ କାରଣ ଥାଏ, ସେ ସ୍ଥାନରେ ହିଁ କାର୍ଯ୍ୟ ଜନ୍ମେ । ଏହି ନିୟମର ଅନ୍ୟଥା ଘଟିଲେ ଅର୍ଥାତ୍ ଭିନ୍ନ ଭିନ୍ନ ସ୍ଥାନରେ କାର୍ଯ୍ୟ ଓ କାରଣର ସ୍ଥିତି ବର୍ଣ୍ଣିତ ହେଲେ ଅସଙ୍ଗତି ଅଳଙ୍କାର ହୁଏ ।

ଉଦାହରଣ :— ଜୀବନ ହରିଲେ ତଟିନୀ ଦେହରୁ
ଦିନମଣି ଶୂନ୍ୟେ ଥାଇ
ଫାଶି ଦେଉଛନ୍ତି ଧୀବରେ ମୀନକୁ
ବଡଶ ରଜ୍ଜୁ ପକାଇ ।

ବିଶ୍ଳେଷଣ :— ଯେଉଁ ଲୋକ ଜୀବନ ହରଣ କରେ ସେ ଫାଶି ପାଏ । ଏଠାରେ ଦିନମଣି ଜୀବନ ହରଣ କଲେ, କିନ୍ତୁ ମାଛମାନେ ଫାଶି ପାଇଲେ । ତେଣୁ ଅସଂଗତ ଅଳଙ୍କାର ହେଲା ।

## ବିଷମ

(କ) କାରଣ ଥିବା ସତ୍ତ୍ବେ ଯଦି ବିପରୀତ ଓ ଅବାଂଛିତ ଫଳର ଉଦ୍ଭବ ହୁଏ ।

(ଖ) କ୍ରିୟା ଥାଇଁ ଯଦି କାର୍ଯ୍ୟରେ ତାର ବିପରୀତ ପ୍ରକାଶ ହୁଏ ।

(ଗ) ଏକାଧାରରେ ଯଦି ନିତାନ୍ତ ଅସଂଭବ ଘଟଣାର ସମାବେଶ ହୁଏ ତାହାହେଲେ ହୁଏ ବିଷମ ଅଳଙ୍କାର ।

ଉଦାହରଣ :— ଜନ୍ମିବ ରାଠୋର କୁଳେ ବଂଶ କୁଳ ପାଂଶୁଳ
କ୍ଷୀରୋଦ୍ଧିଁ ଗରଳ ପ୍ରାୟେ ସୋମ ଶିଖାରୁ ଅବା
ସମଳ ଅଳକୁ ପ୍ରାୟେ ଜାହ୍ନବୀକ୍ଷୁବ୍ଧ ଯତ
ମଦମତ୍ତ ଜୟଚନ୍ଦ୍ର ଆର୍ଯ୍ୟଭୂମି ଦ୍ରୋହୀ ।
(ମହାଯାତ୍ରା)

ବିଶ୍ଳେଷଣ :— ଏଠାରେ ଜାତୀୟତାବାଦୀ ରାଠୋର କୁଳରୁ ବିପରୀତ ଗୁଣ ସମ୍ପନ୍ନ ଜୟଚନ୍ଦ୍ରର ଜନ୍ମ ବର୍ଣ୍ଣିତ ହୋଇଥିବାରୁ ବିଷମ ଅଳଙ୍କାର ହେଲା ।

## ଅନ୍ୟାନ୍ୟ ଅଳଙ୍କାର

**କାବ୍ୟଲିଙ୍ଗ :—** କୌଣସି ବାକ୍ୟାର୍ଥ ବା ପଦାର୍ଥ ବ୍ୟଞ୍ଜନା ଦ୍ୱାରା ଅନ୍ୟ କୌଣସି ବର୍ଣ୍ଣନୀୟ ବିଷୟର କାରଣ ରୂପରେ ଅନୁମିତ ହେଲେ କାବ୍ୟଲିଙ୍ଗ ଅଳଙ୍କାର ହୁଏ ।

ଯଥା :—(୧) "ରେ ଦକ୍ଷିଣ ହସ୍ତ ତୁହି ନିର୍ଦ୍ଦୟ ରାମର
ବଞ୍ଚାଇବା ପାଇଁ ମୃତ ଶିଶୁ ବ୍ରାହ୍ମଣର
ଖଡ୍ଗ ପ୍ରହାର କର, ଶୂଦ୍ର ମୁନି ଶିରେ
ଦୟା ମାୟା କାହିଁ ତୋର ଏଡ଼ ଜଗତରେ ?
ତୁହିଟରେ ଅନାୟାସେ ପେଷିଲୁ କାନନେ
ପୂର୍ଣ୍ଣଗର୍ଭା ବୈଦେହୀଙ୍କୁ ନିର୍ଦ୍ଦୟ ମନେ ।"

(୨) ଏହିରୂପେ କେତେ କଥା ଭାବ ଭାବ ନବ ଆଶାବତୀ ବାମା
ନବୀନ ଉଲ୍ଲାସେ ନବୀନ ଲାଳସେ ଯାପିଲା ନବ ବିଯାମା ।

ବିଶ୍ଳେଷଣ :— ପ୍ରଥମ ପଦ୍ୟାଂଶରୁ ସୂଚିତ ହୁଏ ଯେ ରାମଙ୍କର ଦକ୍ଷିଣ ହସ୍ତର ନିର୍ଦ୍ଦୟତା; ବୈଦେହୀଙ୍କୁ ନିର୍ଦ୍ଦୟ ମନରେ କାନନକୁ ପେଷିବା ଠାରୁ ପ୍ରତିପାଦିତ । ତେଣୁ ସେହି ହସ୍ତ ପୁଣି ନିର୍ଦ୍ଦୟ ହୋଇ ଶୂଦ୍ର ମୁନି ଶିରରେ ଖଡ୍ଗ ପ୍ରହାର କଲା । ଏଠାରେ ପ୍ରଥମ ବାକ୍ୟାର୍ଥ ଦ୍ୱିତୀୟ ବାକ୍ୟାର୍ଥ ପ୍ରତି କାରଣ ହେବାରୁ କାବ୍ୟ-ଲିଙ୍ଗ ହେଲା । ଦ୍ୱିତୀୟ ପଦ୍ୟାଂଶରେ ଶକୁନ୍ତଳା ନବୀନ ଉଲ୍ଲାସରେ, ନବୀନ ଲାଳସାରେ ନବରବି ଯାପନ କଲା । ଏଥିପାଇଁ ନବ ଆଶାବତୀ ପଦଟିହିଁ କାରଣ, ଅର୍ଥାତ୍ ଶକୁନ୍ତଳା ନବ ଆଶାବତୀ ହୋଇଥିବାରୁ ସେ ନବୀନ ରବି ଯାପନ କଲା । ତେଣୁ କାବ୍ୟଲିଙ୍ଗ ହେଲା ।

## ଅର୍ଥାନ୍ତର ନ୍ୟାସ

କାର୍ଯ୍ୟଦ୍ୱାରା କାରଣର ଅଥବା କାରଣ ଦ୍ୱାରା କାର୍ଯ୍ୟର କିମ୍ବା ସାମାନ୍ୟ ଦ୍ୱାରା ବିଶେଷର ବା ବିଶେଷ ଦ୍ୱାରା ସାମାନ୍ୟର ସମର୍ଥନ କରାଗଲେ ଅର୍ଥାନ୍ତର ନ୍ୟାସ ଅଳଙ୍କାର ହୁଏ । ସମର୍ଥନ ଏ ଅଳଙ୍କାରର ବିଶେଷ ଲକ୍ଷଣ । ଯେ ସମର୍ଥିତ ହୁଏ ତାହା ସମର୍ଥ୍ୟ । ଯେ ସମର୍ଥନ କରେ ସେ ସମର୍ଥକ ।

ସାମାନ୍ୟ=ସାଧାରଣ=General statement,

ବିଶେଷ= Particular Statement

### ସାମାନ୍ୟ ଦ୍ୱାରା ବିଶେଷର ସମର୍ଥନ :—

ଉ:ହ:—(୧) ବରଷା କାଳେ ଅଟେ ଉଦ୍‌ଭିଦ ଚିହ୍ନ

ମାତ୍ର ପଙ୍କଜ ମଲ ନୁହେଁ ବିଚିତ୍ର

ଜଳ ଗହଳ ହେଲେ ତା ପକ୍ଷେ ଯମ

ଅତି ସମ୍ପଦ ବାତୁ ମହା ବିଷମ ।

ବିଶ୍ଳେଷଣ :— ଏଠାରେ "ଅତି ସମ୍ପଦ ମହା ବିଷମ"— ଏହି ସାମାନ୍ୟ ସତ୍ୟ ଦ୍ୱାରା ପଙ୍କଜର ମୃତ୍ୟୁ ରୂପକ ବିଶେଷ ସତ୍ୟ ସମର୍ଥିତ ହୋଇଛି ।

### ବିଶେଷ ଦ୍ୱାରା ସାମାନ୍ୟର ସମର୍ଥନ :—

(୨) ଆଜ ଏକ କଥା ଲୋକଙ୍କୁ କହୁଣି

କରାଏ ପ୍ରକୃତ ଗୁଣ

ତୀକ୍ଷ୍ଣ କରିବାକୁ ଯାଇ କେ ନ ଥାଏ

ବନ କଣ୍ଟକର ମୁନ ।

ବିଶ୍ଳେଷଣ :— ଏଠାରେ ବନ କଣ୍ଟକର ମୂନକୁ କେହି ତୀକ୍ଷ୍ଣ କରି ନ ଥାଏ ; ଏହି ବିଶେଷ ବାକ୍ୟାର୍ଥ ଦ୍ୱାରା ପ୍ରକୃତ ଗୁଣ ଲୋକଙ୍କୁ ନିପୁଣ କରେ— ଏହି ସାମାନ୍ୟ ବାକ୍ୟାର୍ଥ ସମର୍ଥିତ ।

(ଖ) କ୍ଷୁଦ୍ରେ ଭଦ୍ରଭବନେ ନେଲେ ଶରଣ
ନିରାଶ ନ ହୁଅନ୍ତି ଯାଚକଗଣ ।
ଗିରି ମହତ, ପୁଣି ତୁ ହିତକର
ମସ୍ତକେ ସ୍ଥାନ ତୋତେ ଦେବେ ଭୂଧର । (ମେଘଦୂତ)

ବିଶ୍ଳେଷଣ :— ଏଠାରେ ସାମାନ୍ୟ ଦ୍ୱାରା ବିଶେଷର ସମର୍ଥନ କରାଯାଇଛି ।

## ବ୍ୟାଜସ୍ତୁତି

ନିନ୍ଦା ଛଳରେ ସ୍ତୁତି କିମ୍ବା ସ୍ତୁତି ଛଳରେ ନିନ୍ଦା କରାଗଲେ ବ୍ୟାଜସ୍ତୁତି ଅଳଙ୍କାର ହୁଏ ।

**ସ୍ତୁତି ଛଳରେ ନିନ୍ଦା :—**

(୧) ସାହେବୀ ପୋଷାକ କେହୁ ଝବା ପିନ୍ଧି
ସଙ୍ଗିତେ କହଇ ବଙ୍କା ବଙ୍କା ହିନ୍ଦି
ଥରେ ଅଚିର ଲାଗି ସାହେବୀ ଠାଣିରେ
ପୋଛଇ ବଦନ ରେମାଲ୍ କାନିରେ । (ଦରବାର)

ବିଶ୍ଳେଷଣ :— ଏହି ଦେଖି ପଢିଲେ ମନେହୁଏ ସାହେବମାନଙ୍କ ଗୁଣ କୀର୍ତ୍ତନ ବା ସ୍ତୁତି କରା ହୋଇଛି । କିନ୍ତୁ ପ୍ରକୃତରେ ଥଟ୍ଟା ବା ନିନ୍ଦା କରାହୋଇଛି ।

(୨) କହୁଥାଏ ମାମୁଁ ମୋତେ କେତେ ସେନେହ
କରି ତା ଭାବନା ଦହି ହେଉଅଛି ହୃଦୟ । (ଲ: ଚ:)

ବିଶ୍ଳେଷଣ :— ଏଠାରେ ଶ୍ରୀକୃଷ୍ଣ ତାଙ୍କ ମାମୁଁ କଂସର ସ୍ତୁତି କଲ ପରି ମନେହୁଏ ; ମାତ୍ର କଂସର ଶତ୍ରୁତା ଏଠାରେ ବର୍ଣ୍ଣନ କରାଯାଇଛି ।

ନିନ୍ଦା ଛଳରେ ସ୍ତୁତି :—

(୧) ନୀଳାଚଳ ଭଣ୍ଡାରର ! ସତରେ ଏ ମିଛ
ନେଲ ଯାହା ଦେଲ ତାହା
ଏଥିକୁ କପାଇଁ ମହାଦାତା ପଣେ ପତାକା ବାନ୍ଧିଛ !
(ଯଦୁମଣି ଭଜନ)

(୨) କାଢ଼ିଲ ଜାତି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡ ଦିଅ ଠାଳ
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତ କରିଦେବ ଗାଳ ହେ,
କୃପାନିଧି !
କରୁଣାସିନ୍ଧୁ ବୋଲି ଜଣ, କହନ୍ତ ବୁଧେ ଜର ମର
କାଳସର୍ପ ଆପଣ କବଳ କର ପ୍ରାଣ-ପବନମାନଙ୍କୁ ସବୁର ହେ
କୃପାନିଧି ! (ଭକ୍ତସୁଧା)

ବିଶ୍ଳେଷଣ :— ଉକ୍ତପଦ୍ୟରେ ଜଗନ୍ନାଥଙ୍କ ନିନ୍ଦା ଛଳରେ ସ୍ତୁତି କରାଯାଇ ଥିବାରୁ ବ୍ୟାଜସ୍ତୁତି ଅଳଙ୍କାର ହେଲା ।

## ଦୀପକ

ପ୍ରକୃତ ଓ ଅପ୍ରକୃତ ବସ୍ତୁ ଦୁଇଟି ଏକ ଧର୍ମର ବନ୍ଧନରେ ସଂଯୁକ୍ତ ହେଲେ ଦୀପକ ଅଳଙ୍କାର ହୁଏ । ପ୍ରକୃତ ପଦାର୍ଥର ଧର୍ମ

ଯହିଁ ଅପ୍ରକୃତ ପଦାର୍ଥକୁ ପ୍ରକାଶିତ କରୁଥାଏ ତାହାହେଲେ ଦୀପକ ହୁଏ । ଅନ୍ୟ କଥାରେ କହିଲେ ଘରେ ଥିବା ଦୀପର ଆଲୋକ ଯେପରି ବାହାରର ବସ୍ତୁକୁ ଆଲୋକିତ କରେଥାଏ ସେହିପରି ପ୍ରକୃତ ବସ୍ତୁ, ଅପ୍ରକୃତ ବସ୍ତୁକୁ ପ୍ରକାଶିତ କରିବା ହେତୁ ଦୀପକ ଅଳଙ୍କାର ହୁଏ ।

ଉଦାହରଣ :--(୧) ଖଳ ଜଳଧର କରନ୍ତି ଗରଳ ଉଦ୍‌ଗାର ।

(୨) ଦୁର୍ଜନ ସ୍ୱଭାବ, ଶ୍ୱାନ ଲାଙ୍ଗୁଳ
ସଳଖାଇଲେ ବି ନୁହଇ ସରଳ ।

(୩) ସମୟ ସମୀର ନୀର ନୁହେଁ ବନ୍ଧ କେବେ ସ୍ଥିର ।

ବିଶ୍ଳେଷଣ :— ଉପର୍ଯ୍ୟୁକ୍ତ ଉଦାହରଣ ମାନଙ୍କରେ ପ୍ରକୃତ ଓ ଅପ୍ରକୃତ ବସ୍ତୁ ଏକ ଧର୍ମର ବନ୍ଧନରେ ବନ୍ଧା । ପ୍ରଥମ ପଦରେ ଖଳ ପ୍ରକୃତ ବସ୍ତୁ ; ଜଳଧର ଅପ୍ରକୃତ, ଧର୍ମ, ଗରଳ ଉଦ୍‌ଗାର । ଦ୍ୱିତୀୟ ପଦରେ ଦୁର୍ଜନ ସ୍ୱଭାବ ପ୍ରକୃତ, ଶ୍ୱାନ ଲାଙ୍ଗୁଳ ଅପ୍ରକୃତ ସରଳ ନ ହେବାହିଁ ସେମାନଙ୍କର ଧର୍ମ । ତୃତୀୟତଃ ସମୟ— ପ୍ରକୃତ, ସମୀର ଓ ନୀର ଅପ୍ରକୃତ, ବନ୍ଧନବାଗ୍ ଧର୍ମ, ଅସ୍ଥିରତା । ତେଣୁ ଏ ସବୁରେ ଦୀପକ ଅଳଙ୍କାର ହେଲା ।

## ତୁଲ୍ୟ ଯୋଗିତା

କେବଳ ପ୍ରକୃତ ବସ୍ତୁମାନଙ୍କୁ କିମ୍ବା କେବଳ ଅପ୍ରକୃତ ବସ୍ତୁମାନଙ୍କୁ ଏକମାତ୍ର ଧର୍ମର ବନ୍ଧନରେ ସଂଯୁକ୍ତ କରି ଦିଆଯାଇଥିଲେ ସେଠି ତୁଲ୍ୟ ଯୋଗିତା ଅଳଙ୍କାର ହୁଏ ।

ଉଦାହରଣ :— ନାହିଁ ମନ ସ୍ଥିର ସ୍ଥିର ମହାବୀର
ସ୍ଥିର ନାମ ତେଣୁ ବହୁଛି ମହୀର ।
(ନନ୍ଦକେଶରୀ).

ବିଶ୍ଳେଷଣ :— ଏଠାରେ ଗୌର ମହାବୀର- ଗୌଡ଼ଗଙ୍ଗଦେବ ପ୍ରକୃତ ବସ୍ତୁ ; ସେ ତାଙ୍କ 'ଗୌର' ରୂପ ନାମର ଧର୍ମ ଅର୍ଥାତ୍ ଗୌର କରିବାର ସ୍ୱାର୍ଥତା ରକ୍ଷା କରି ପାରନ୍ତି । କାରଣ ସେ ନୃପକେଶରୀ ମନ, ଗୌର କରନ୍ତି । ତେଣୁ ଏଠି ଏହି ଅଳଙ୍କାର ହୋଇଛି ।

**ଦୀପକ ଓ ତୁଲ୍ୟଯୋଗିତା :—**

ଏମାନଙ୍କ ମଧ୍ୟରେ ଧର୍ମର ବନ୍ଧନ ଏକ ସାଧାରଣ ଲକ୍ଷଣ । ମାତ୍ର ପାର୍ଥକ୍ୟ ଏତେ ; ଦୀପକରେ ଧର୍ମର ବନ୍ଧନ ଦ୍ୱାରା ପ୍ରକୃତ ଓ ଅପ୍ରକୃତ ଅଭିନ୍ନ ବନ୍ଧାହୁଏ । କିନ୍ତୁ ତୁଲ୍ୟଯୋଗିତାରେ ଧର୍ମ ବନ୍ଧନ ଦ୍ୱାରା ପ୍ରକୃତ ଓ ଅପ୍ରକୃତ ମଧ୍ୟରୁ ଗୋଟିଏ ବନ୍ଧା ହୋଇଥାଏ ।

## ସଂକର ଓ ସଂସୃଷ୍ଟି

ମିଶ୍ରଣରୁ ଏହି ଦୁଇ ଅଳଙ୍କାରର ସୃଷ୍ଟି । ଅବିମିଶ୍ରଭାବେ ଥିବା ଅନେକ ଅଳଙ୍କାରର ହୁଏତ ସନ୍ଧାନ ମିଳିଥାଏ । କିନ୍ତୁ ମିଶ୍ରିତ ଭାବେ ବା ମିଳିତ ଭାବେ ଅନେକ ଅଳଙ୍କାର ମଧ୍ୟ କାବ୍ୟ କବିତାରେ ପରିଦୃଷ୍ଟ ହୋଇଥାନ୍ତି । ଏଇ ମିଶ୍ରଣ ଜଳ ତଣ୍ଡୁଳ ମିଶ୍ରଣ ତୁଲ୍ୟ କିମ୍ବା କ୍ଷୀର-ନୀର ମିଶ୍ରଣ ତୁଲ୍ୟ ଦେଖାଯାଏ । ସାଧାରଣରେ ଜଳ ତଣ୍ଡୁଳ ମିଶ୍ରଣରେ ପ୍ରତ୍ୟେକ ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ବଜାୟ ରଖି ନିରପେକ୍ଷ ମର୍ଯ୍ୟାଦା ଲାଭ କରିଥାନ୍ତି । ଏହି ଯୌଗିକରୁ ଜଳ କିମ୍ବା ତଣ୍ଡୁଳର ଅପସାରଣ ହେଲେ ସୁଦ୍ଧା ତାହାର କିଛି ମୂଲ୍ୟହାନି ହୁଏ ନାହିଁ । କିନ୍ତୁ କ୍ଷୀର ନୀରର ମିଶ୍ରଣରୁ ତାହାକୁ ଅପସାରଣ କରିବା ହୁଏତ ଅସମ୍ଭବ ହୋଇ

ପଡେ । ଏଠି ସ୍ୱତନ୍ତ୍ର ସତ୍ତା ବା ସ୍ୱାଧୀନତାର ଅପଚୟ ସଂଘଟିତ ହୁଏ । ପ୍ରତ୍ୟେକ ନିରପେକ୍ଷ ନ ହୋଇ ସାପେକ୍ଷିତ ହୋଇଥାନ୍ତି । ତିଳତଣ୍ଡୁଳ ବା କ୍ଷୀର-ନୀର ଅନୁରୂପ ମିଶ୍ରଣ ନୀତିରେ ସଂସୃଷ୍ଟି ଓ ସଂକର ଅଳଙ୍କାର ସୃଷ୍ଟି ହୁଏ । ଏହି ଦୁଇଟି ଅଳଙ୍କାର କାବ୍ୟ ଶାସ୍ତ୍ରରେ ଏକ ବଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି ।

ସଂସୃଷ୍ଟି :— ଯେଉଁଠି ଏକାଧିକ ଅଳଙ୍କାର ତିଳତଣ୍ଡୁଳ ମିଶ୍ରଣ ଅନୁରୂପ ପରସ୍ପର ନିରପେକ୍ଷ ଭାବରେ କେହୁ କାହାରିକୁ ନିର୍ଭର ନ କରି ରହିଥାନ୍ତି, ସେଠି ସଂସୃଷ୍ଟି ଅଳଙ୍କାର ହୁଏ । ଏହା ଶବ୍ଦାଳଙ୍କାର ସଂସୃଷ୍ଟି, ଅର୍ଥାଳଙ୍କାର ସଂସୃଷ୍ଟି ଓ ଶବ୍ଦାର୍ଥାଳଙ୍କାର ସଂସୃଷ୍ଟି ରୂପେ କାବ୍ୟଶାସ୍ତ୍ରରେ ଦେଖାଯାଏ ।

ଉଦାହରଣ :— (କ) ଏହିରୂପେ ପ୍ରିୟ ପ୍ରିୟାଭାବ, ପ୍ରିୟ
ଭାବ ପ୍ରିୟା ସ୍ମର ସ୍ମର
ଦୁଃଖାସନେ ବସି ଧରି ନୈପୁଣ୍ୟ ଅସି
କାଟୁଥିଲେ ବଉଦବସ ।
(ତପସ୍ୱିନୀ)

ବିଶ୍ଳେଷଣ :— ଏଠାରେ ପ୍ରଥମ ପାଦରେ ଅନ୍ୟୋନ୍ୟ ଅଳଙ୍କାର କାରଣ ପ୍ରିୟ (ରାମଚନ୍ଦ୍ର) ପ୍ରିୟା (ସୀତା) ଏକ ଅପରର 'ସ୍ମରଣ' ର କାରଣ । ୨ୟ ପାଦରେ ପରଂପରିତ ରୂପକ, କାରଣ, ଦୁଃଖରେ ଆସନର ଆରୋପ ହେତୁ ନୈପୁଣ୍ୟରେ ଅସୀର ଆରୋପ ହୋଇଛି । ଉଭୟ ଅଳଙ୍କାର ନିରପେକ୍ଷ ବା ସ୍ୱାଧୀନ ଭାବରେ ଥିବାରୁ ସଂସୃଷ୍ଟି ହେଲ ।

(ଖ) ଶରଦ୍ଚନ୍ଦ୍ର କିଣା ବଦନ ମଣ୍ଡଳ
ଲାବଣ୍ୟ-ସରେ କି ସୁବର୍ଣ୍ଣ କମଳ ।
(ନନ୍ଦକେଶରୀ)

ବିଶ୍ଳେଷଣ :— ଏଠାରେ ବଦନ ମଣ୍ଡଳ ଶରତ ଚନ୍ଦ୍ରକୁ ଜିଣୁଛି । ତେଣୁ ଏଥିରେ ବ୍ୟତିରେକ । ୨ୟ ପାଦରେ ଉତ୍ପ୍ରେକ୍ଷା । ସୁତରାଂ ଉଭୟ ଅଳଙ୍କାର ନିରପେକ୍ଷ ଭାବେ ଥିବାରୁ ସଂସୃଷ୍ଟି ଅଳଙ୍କାର ହୋଇଛି ।

ସଂକର :— ଯେଉଁଠି ଏକାଧିକ ଅଳଙ୍କାର କ୍ଷୀର-ନୀର ମିଶ୍ରଣ ସଦୃଶ ପରସ୍ପର ସାପେକ୍ଷ ଭାବରେ ଥାଆନ୍ତି, ସେଠି ସଂକର ଅଳଙ୍କାର ହୁଏ ।

ଉଦାହରଣ :—(କ) କାଳନ୍ଦୀ ସୁର ସରିତ ହୋଇଲା ପ୍ରାୟେ ଏକତ୍ର
ରମଣୀୟ ଦିଶେ କଳା ଧଳା ଶ୍ରୀ ଅଙ୍ଗ
ଜଣିବାକୁ କଳୁଷ ନାଶ
ଭଲ ବନ୍ଧୁ ମଧ୍ୟେ ବେନି ତୀର୍ଥ ପ୍ରକାଶ ।

(ଉ ଭ:)

ବିଶ୍ଳେଷଣ :— ଉତ୍ପ୍ରେକ୍ଷା ଏଠାରେ ମୁଖ୍ୟ ଅଳଙ୍କାର କାରଣ 'ମଧ୍ୟେ ବେନି ତୀର୍ଥ ପ୍ରକାଶ' ରୁ ସମ୍ଭାବନା ଅର୍ଥ ସୂଚିତ ହେଉଛି । କିନ୍ତୁ ଅନୁପ୍ରାସ ମଧ୍ୟ ସାପେକ୍ଷ ଭାବରେ ଥିବାରୁ ସଂକର ହେଉଛି ।

(ଖ) ସୀତା ବୋଇଲେ "ପଣିର ମଟୂର ଏ ସ୍ୱଚ୍ଛନୀର
ନୀର ନୁହେଁ, ଜନନୀର କ୍ଷୀର ପ୍ରତ୍ୟକ୍ଷେ ।

ଏଠାରେ ଅପହ୍ନୁତି ଓ ଅନୁପ୍ରାସର ସାପେକ୍ଷ ଭାବ ବର୍ଣ୍ଣନା କରା ହୋଇଛି ।

(ଗ) ମଞ୍ଜରମା କାଞ୍ଚୀକେମା- ସ୍ନାନେ ମୂନା
କାଞ୍ଚୀକେମା- ବେଣୀ ପ୍ରଭ ବେଣୀ ଯୂନା ।

(ଦରବାର)

'ମନ୍ଦଗମା କାଞ୍ଚିକେମା' ଲୁପ୍ତକ । 'କାଞ୍ଚୀନିଭମା ବେଣୀ ପ୍ରଭୃ ବେଣୀ' — ଉପମା । ବେଣୀପୁଚ୍ଛା— ଅତିଶୟୋକ୍ତି । ଏପରି ଅନେକଟି ଅଳଙ୍କାର ଥିବାରୁ ସଂକର ହେଲା ।

## ସ୍ୱଭାବୋକ୍ତି

ବାଳକ, ବସ୍ତୁ ଓ ପ୍ରକୃତିର ସ୍ୱଭାବ ସୁନ୍ଦର ତଥା ଚମତ୍କାର ବର୍ଣ୍ଣନାକୁ ସ୍ୱଭାବୋକ୍ତି ଅଳଙ୍କାର କୁହାଯାଏ ।

ଯଥା :—ନବୀନ ପଲ୍ଲବ ଘନ କୁସୁମ, ଧବଳଅଟ୍ଟ ହେତେ ରସାଳଦ୍ରୁମ
ମନୋଜ୍ଞ ପକ୍ଷିବ ପୃଷ୍ପ ସ୍ତବକ, ସର୍ବାଙ୍ଗ ମଣ୍ଡିତ ଦେଖ ଅଂଶ ବେ
ଭାମିନୀ, ନିଆଳି, ଗୋଲାପ ଫୁଲ, ଫୁଟିବାରୁ ଉପବନ ମଞ୍ଜୁଳ
ରକ୍ତକାନ୍ତି ରମ୍ୟ ପଳାଶ ବନ, ଦୂରସ୍ଥ ଚମକେ ନୟନ ମନ ।
(ମଧୁସୂଦନ)

ଏଠାରେ ସ୍ୱଭାବ ସୁନ୍ଦର ପ୍ରକୃତି ବର୍ଣ୍ଣନା ହୋଇଛି ।

(୨) ଯେ ବୋଲଇ ଏଣୁ କି କରୁଥିଲା
ମୋ କଣ୍ଠ ଧରଇ ମାରିଲି
ଯେ ବୋଲଇ ମତେ ଅଧ ଭରି
ନେଉଥିଲୁ ଯେ ନେଇ ଗିଲୁଳୀ କି
କେହୁଁ ଗୋପୀକା, ବୋଲେ ଦେଖଥାଇଁ ଭାଳିଙ୍କି
କୃପା କଟାକ୍ଷୀ ନୂପୁରେ ଗିଳା ଦେଇ ଅନ୍ତ୍ର ସୁଖ ସଞ୍ଚାଳିଙ୍କି ।
(ରସକଲ୍ଲୋଳ)

ଏଠାରେ ବାଳକ ଗୋପୀମାନଙ୍କର ସ୍ୱଭାବ ପ୍ରକୃତି ବର୍ଣ୍ଣନା ହେତୁ ସ୍ୱଭାବୋକ୍ତି ଅଳଙ୍କାର ହେଲା ।

## ସହୋକ୍ତି

ଉପମେୟ ଓ ଉପମାନ ମଧ୍ୟରୁ କୌଣସି ଗୋଟିକୁ ପ୍ରାଧାନ୍ୟ ଦେଇ ସହାର୍ଥକ ଶବ୍ଦ ପ୍ରୟୋଗ ଦ୍ୱାରା ଉଭୟ ଦୁଇଟିକୁ ସଂଯୋଗ କରଯାଏ ତାହାହେଲେ ସେଠାରେ ସହୋକ୍ତି ଅଳଙ୍କାର ହୁଏ । ଏଥିରେ ପ୍ରଧାନ ଲକ୍ଷଣଟି ଦୁଇଟି— (୧) ଉପମେୟ ଓ ଉପମାନ ମଧ୍ୟରୁ କୌଣସି ଗୋଟିକର ପ୍ରାଧାନ୍ୟ ଥିବ । (୨) ସହାର୍ଥକ ଶବ୍ଦଦ୍ୱାରା ଦୁଇଟିକୁ ସଂଯୋଗ କରାଯାଇଥିବ ।

ଉଦାହରଣ :— (କ) ଚିର ଅଙ୍ଗେ ହୁଏ ଯିନା କେତେ ପ୍ରହାର ।
ହା ହା ତହିଁ ସଙ୍ଗେ ଶିବଧନୁର ସଂହାର ।
(ତପସ୍ୱିନୀ)

ବିଶ୍ଳେଷଣ :— ଏଠାରେ ପୂର୍ବାପର ସଙ୍ଗରୁ ପ୍ରଣୀତ ହୁଏ ଯେ 'ସୀତାଙ୍କ ଦେହସ୍ଥ ସନ୍ତାନ ଶିବର ସୀ' ଅଦୃଷ୍ଟ ଓ 'ସୀତାଙ୍କ ନିର୍ବାସନ' ରେ ପ୍ରହାର ସହିତ ତୁଳନୀୟ । ଉପମାନ ଶିବଧନୁ ଓ ତାଙ୍କ ପ୍ରହାରର ପ୍ରାଧାନ୍ୟ ଏଠାରେ ସ୍ୱୀକୃତ । ତେବେ ସହାର୍ଥବୋଧକ ଯେ "ସଙ୍ଗେ" ଦ୍ୱାରା ଦୁଇଟି ସଂଯୁକ୍ତ । ତେଣୁ ସହୋକ୍ତି ।

(ଖ) ମୋହ ଭଗ୍ନକଲେ କାଳ ସେ ଦୁର୍ବଳ ଗୃହ
ସଙ୍ଗେ ସଙ୍ଗେ ଭାଙ୍ଗିଦେଲେ ମୋ ହୃଦ ସନ୍ତାପ ।
(ତପସ୍ୱିନୀ)

ବିଶ୍ଳେଷଣ :— ଦୁର୍ବଳ ଗୃହ ଉପମାନ, ହୃଦ, ସନ୍ତାପ ଉପମେୟ । ଦୁଇଟିରୁ ଉପମେୟକୁ ଗୁରୁତ୍ୱ ଦେଇ ସହାର୍ଥ ଶବ୍ଦ "ସଙ୍ଗେ" ଦ୍ୱାରା ସଂଯୁକ୍ତ କରାଯାଇ ଥିବାରୁ ସହୋକ୍ତି ଅଳଙ୍କାର ହୋଇଛି ।

## ପର୍ଯ୍ୟାୟୋକ୍ତ

ଅଭିଳଷିତ ଅର୍ଥ ଏକ ବିଶେଷ ଭଙ୍ଗୀରେ ଅଭିବ୍ୟକ୍ତ ହେଲେ ପର୍ଯ୍ୟାୟୋକ୍ତି ଅଳଙ୍କାର ହୁଏ ।

ଉଦାହରଣ :— ଗନ୍ଧାମୋଦେ ଅନ୍ଧ ହୋଇ ଅଳିକୁଳ
ଗୁଞ୍ଜନ୍ତି ବାମାଙ୍କୁ କରନ୍ତି ଅଙ୍କୁଳ । (ଚିଲିକା)

ବିଶ୍ଳେଷଣ :— ଭ୍ରମରମାନେ କାଞ୍ଚୀକେମାଙ୍କ ସୁଗନ୍ଧରେ ମୁଗ୍ଧ ହୋଇ ତାଙ୍କୁ ଅସ୍ତବ୍ୟସ୍ତ କରୁଛନ୍ତି । ଏଠାରେ ଚନ୍ଦ୍ରାବତୀ ପଦ୍ମିନୀ ଜାତୀୟା ସ୍ତ୍ରୀ ବୋଲି ସୂଚିତ ହୋଇଅଛି । କିନ୍ତୁ ତାହା ସ୍ପଷ୍ଟଭାବେ ପ୍ରକାଶିତ ନ ହୋଇ ଏକ ବିଶେଷ ଭଙ୍ଗୀରେ ପ୍ରକାଶିତ ହୋଇଥିବାରୁ ଏହି ଅଳଙ୍କାର ହେଲା ।

## ଅନନ୍ୱୟ

ଏକ ପଦାର୍ଥକୁ ଉପମେୟ ଓ ଉପମାନ ରୂପେ ବର୍ଣ୍ଣନା କଲେ ଏହି ଅଳଙ୍କାର ହୁଏ ।

ଉଦାହରଣ :— ରତ୍ନ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହୁ ତାର ସିନା ।
( ଚିଲିକା )

ବିଶ୍ଳେଷଣ :— ଏଠାରେ ଚନ୍ଦ୍ରାବତୀ ଉପମେୟ । ଉପମାନ ଆଉ କିଛି ନ ହୋଇ ସେ ନିଜେ ହୋଇଥିବାରୁ ଏହି ଅଳଙ୍କାର ହେଲା ।

## ଅନ୍ୟୋନ୍ୟ

ଦୁଇଟି ବସ୍ତୁ ପରସ୍ପରର କାରଣ ହେଲେ ଅନ୍ୟୋନ୍ୟ ଅଳଙ୍କାର ହୁଏ ।

ଉଦାହରଣ :—(କ) ରଜନୀ ଶୋଭମାନ୍ତୁ ଚନ୍ଦ୍ର ପ୍ରକାଶେ
ଚନ୍ଦ୍ର ଶୋଭମାନ୍ତୁ ରାତ୍ରି ଆକାଶେ ।

ଏଠାରେ ଚନ୍ଦ୍ର ଓ ରଜନୀ ପରସ୍ପର ଶୋଭାର କାରଣ ହୋଇ ଥିବାରୁ ଏହି ଅଳଙ୍କାର ହେଲ ।

(ଖ) ଏହିରୂପେ ପ୍ରିୟ ପ୍ରିୟାଭାବ, ପ୍ରିୟ-
ଭାବ ପ୍ରିୟା ସ୍ୱବ ସ୍ୱର
ଦୁଃଖାସନେ ବସି ଧଣ୍ଡ ଧୈର୍ଯ୍ୟ ଅସି
କାଟୁଥିଲେ ବହୁ ବର୍ଷ । (ତପସ୍ୱିନୀ)

ବିଶ୍ଳେଷଣ :— ଏଠାରେ ପ୍ରିୟ (ରାମଚନ୍ଦ୍ର) ପ୍ରିୟା (ସୀତା) ପରସ୍ପର ଦୁଃଖ ତଥା ଶାନ୍ତିର କାରଣ । ତେଣୁ ଏହି ଅଳଙ୍କାର ହେଲା ।

## ସମୁଚ୍ଚୟ

ଗୋଟିଏ ମାତ୍ର କାରଣ ଯେଉଁଠି କାର୍ଯ୍ୟ ସାଧନରେ ସମର୍ଥ ସେଠାରେ ଯଦି ବହୁ କାରଣର ସମାବେଶ ହୁଏ ତେବେ ସମୁଚ୍ଚୟ ଅଳଙ୍କାର ହୁଏ ।

ଉଦାହରଣ :— ନାନା ତୀର୍ଥ ଜଳ ଆସି ହେବା ମିଶି
ପୂତ କରେ ତୋର ଅଙ୍ଗ ଚର୍ମ୍ମ ମିଶି ।
(ଚିଲିକା)

ବିଶ୍ଳେଷଣ :— ଏଠାରେ ସୃଷ୍ଟ କରିବା କାର୍ଯ୍ୟ ବନ୍ଧୁ ଜୀବଣ ଅର୍ଥାତ୍ ଚନ୍ଦ୍ରନଦୀ ଦ୍ୱାରା ସାଧିତ ହେଉଥିବାରୁ ଏହି ଅଳଙ୍କାର ହେଲା ।

## ସ୍ମରଣ

ସାଦୃଶ୍ୟ ଥିବା କୌଣସି ବସ୍ତୁ ବା ବିଷୟର ଦର୍ଶନରେ ଅନ୍ୟ କୌଣସି ବିଷୟର ସ୍ମୃତି ମନେ ପଡ଼ିଲେ ଏହି ଅଳଙ୍କାର ହୁଏ ।

ଉଦାହରଣ :— ତୋ ସ୍ୱିନ ଲଲାଟେ ଆଜ ସୁଧାଂଶୁ କିରଣ
ଦେଖି ସଖି, ହେଉଅଛି ସେ କଥା ସ୍ମରଣ ।
(ତପସ୍ୱିନୀ)

ବିଶ୍ଳେଷଣ :— ଏଠାରେ ବାଲ୍ମୀକି ଆଶ୍ରମସ୍ଥ ସଖୀର ସ୍ୱେଦଯୁକ୍ତ ଲଲାଟରେ ଚନ୍ଦ୍ରକିରଣ ପତିତ ହେବାର ଦେଖି ସୀତା ତାଙ୍କ ଭଗ୍ନୀଙ୍କର ସ୍ୱେଦଯୁକ୍ତ ମୁଖ ମଣ୍ଡଳ କଥା ସ୍ମରଣ କରୁଛନ୍ତି ।

(୨) ଦେଖି ବସୁଧାର ନୀଳାମ୍ବର ଶୋଭା
ସ୍ମରୁଛି ଅଙ୍ଗ ଲତିକା
ସ୍ମରିଲେ ଗଣୀଏ ପରିଚିତ ନୀଳ
ସିନ୍ଧୁ- ହିଲ୍ଲୋଳ ଚନ୍ଦ୍ରିକା । ( ପାର୍ବତୀ )

ବିଶ୍ଳେଷଣ :— ଏଠାରେ ଚନ୍ଦ୍ରମାର କାନ୍ତି ଧାରଣ କରିଥିବା ବସୁଧାକୁ ସିନ୍ଧୁର ତରଙ୍ଗ ସଦୃଶ୍ୟ ନୀଳ ବର୍ଣ୍ଣର ଶାଢ଼ୀରେ ଦେଖି ସାଗରର, ନୀଳ ତରଙ୍ଗରେ ଚନ୍ଦ୍ର ପ୍ରତିବିମ୍ବିତ ହେବା କଥା ମନେ ପଡୁଛି । ତେଣୁ ସ୍ମରଣ ଅଳଙ୍କାର ହେଲା ।

## ପରିକର

ଅଭିପ୍ରାୟ ଯୁକ୍ତ ବିଶେଷଣ ଯେଉଁଠାରେ ବ୍ୟବହୃତ ହୋଇଥାଏ ସେଠାରେ ପରିକର ଅଳଙ୍କାର ହୁଏ ।

ଉଦାହରଣ :—(୧) ଇତିହାସ ଧଙ୍ଗୁଲୀ ତୁ ଚିଲିକା
ତୋର ତୀରେ ଘଷ ଶ୍ରୀମନ୍ତ ମାଣିକା
ହସ୍ତେ ଲୁହିଁଥିଲେ ପାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।
(ଚିଲିକା)

ବିଶ୍ଳେଷଣ :— ଏଠାରେ ମାଣିକାର ଶ୍ରୀମନ୍ତ ବିଶେଷଣ ଏବଂ ପ୍ରଭୁଙ୍କର ଭାବଗ୍ରାହୀ ଏବଂ ଭକ୍ତ ଚିନ୍ତାମଣି ବିଶେଷଣ ଗୁଡ଼ିକ ଅଭିପ୍ରାୟ ଯୁକ୍ତ । ତେଣୁ ଏହା ଅଳଙ୍କାର ହେଲା ।

## ନିଶ୍ଚୟ

ଉପମାନକୁ ନିଷେଧ କରି ଉପମେୟକୁ ପ୍ରତିଷ୍ଠା କଲେ ନିଶ୍ଚୟ ଅଳଙ୍କାର ହୁଏ । ଏହି ଅଳଙ୍କାରଟି ଅପହ୍ନୁତିର ବିପରୀତ ।

ଉଦାହରଣ :— ଧରି ମନ ଚାଲୁ ଦେଖିଲି
ନୁହେଁ କପୋତ ସ୍ୱନ
ନୁହଇ କୋକିଳ ଡାକଲି
ବମ୍ବା ବୀଣା ନିକ୍ୱଣ
ନୁହେ ଶଙ୍ଖନାଦ ନୁହଇ
ପୁଣି ମୟୂର କେକା
ଲଳନା-ଚରଣ-ଭୂଷଣ
ସ୍ୱର- ନିର୍ଝର ଏକା ।

ବିଶ୍ଳେଷଣ :— ବାଲ୍ମୀକି ଆଶ୍ରମ ନିକଟରେ ସୀତାଙ୍କର କ୍ରନ୍ଦନ ଧ୍ୱନି ଶୁଣି ମୁନି କନ୍ୟାମାନଙ୍କ ମନରେ ବିଭିନ୍ନ ଧାରଣା ଜାତ ହୋଇଛି । ସୀତା କ୍ରନ୍ଦନ ଧ୍ୱନିକୁ ଜଳପ୍ରପାତ ସ୍ୱନ, କୋକିଳର କାକଳି, ଘଣ୍ଟାର ଝଙ୍କାର, ଶଙ୍ଖନାଦ, ମୟୂର କେକା ଇତ୍ୟାଦି ଭିନ୍ନ ଭିନ୍ନ ଭାବରେ ଧାରଣା କରିଛନ୍ତି । କିନ୍ତୁ ଶେଷରେ ତାହା ଏକ ଲଳନାର କଣ୍ଠସ୍ୱର ବୋଲି ନିଶ୍ଚିତ ଧାରଣା ଜନ୍ମିଛି । ତେଣୁ ଏହି ଅଳଙ୍କାର ହେଲା ।

## ଅପ୍ରସ୍ତୁତ ପ୍ରଶଂସା

ଯେଉଁ ଅପ୍ରସ୍ତୁତ ବୃତ୍ତାନ୍ତରୁ ପ୍ରସ୍ତୁତ ବୃତ୍ତାନ୍ତର ପ୍ରତୀତି ହୁଏ ଏବଂ ତାହା ହେଲେ ଏହି ଅଳଙ୍କାର ହୁଏ । ଏହି ଅଳଙ୍କାରଟି ସମାସୋକ୍ତି ଅଳଙ୍କାରର ବିପରୀତ । ଯାହା ଯଥାର୍ଥରେ ବର୍ଣ୍ଣନୀୟ ବିଷୟ ତାହାକୁ ପ୍ରସ୍ତୁତ, ପ୍ରକୃତ ବା ପ୍ରାସଙ୍ଗିକ ବୋଲି କୁହାଯାଏ । କିନ୍ତୁ ଯାହା ବର୍ଣ୍ଣନୀୟ ବା ଅଭିପ୍ରେତ ନୁହେଁ ତାହା ଅପ୍ରସ୍ତୁତ, ଅପ୍ରକୃତ ବା ଅପ୍ରାସଙ୍ଗିକ । ଏଠାରେ ଅପ୍ରସ୍ତୁତ ବା ପ୍ରସ୍ତୁତ ଏହି ଅର୍ଥରେ ପ୍ରଯୁକ୍ତ ।

ଉଦାହରଣ :—(କ) ଯେ ଯେତେ ତେଜସ୍ୱୀ ତା ତେଜ
ମୋତିର ଅଛଇ ଊଣା ।
ଫୁଲ ଶର ଆଗେ ପଡ଼ିଲେ
ବୁଝିଁ ହୁଅଇ ବଣା ।
(ତନୁ ଗୀତା)

ବିଶ୍ଳେଷଣ :— କନ୍ଦର୍ପର ସ୍ୱର୍ଣ୍ଣଙ୍କ ପ୍ରତି ଏହି ଉକ୍ତିରୁ ଜଣାଯାଏ ଯେ "ଯେ ଯେତେ ତେଜସ୍ୱୀ ହେଲେ ବି ଫୁଲଶର ଆଗରେ ତାର

ତେଜ ନମିତ ହୁଏ । ଏହା ଏକ ସାଧାରଣ ସତ୍ୟ । ଏହି ସାଧାରଣ କଥାରୁ ତେଜସ୍ୱୀ ସୂର୍ଯ୍ୟ ମଧ୍ୟ ଫୁଲଶର ଅଗରେ ପଡ଼ିଲେ ମ୍ଳାନ ନେଙ୍କ ହୋଇଯିବ ଏକଥା ବୁଝା ପଡ଼ୁଛି । ଏହାହିଁ ପଦ୍ୟଟିରେ ବକ୍ତାଙ୍କର ଅଭିପ୍ରେତ ବସ୍ତୁ ବା ପ୍ରକୃତ ବସ୍ତୁ । ଏହି ପ୍ରକୃତ ବସ୍ତୁଟି ଏକ ଅପ୍ରକୃତ ବୃତ୍ତାନ୍ତରୁ ଜଣାଯିବାରୁ ତାହା ଅପ୍ରସ୍ତୁତ ପ୍ରଶଂସା ହେଲା ।

(ଖ) ମେଘ ମଂଦ୍ର ଆରବ ଧ୍ୱନିଲ ଆଭାଷର
ତୋ ପ୍ରାଣ ଆବେଗ ବଢ଼ାଇ
ତୋ ସଙ୍ଗେ ବର୍ଷାବାଣ ସୁମଧୁରେ ଝଙ୍କାରି
ପଡ଼ିଲ ମୋ ବକ୍ଷରେ ଯାଇ ।
ତୋ ହୃଦ ନୋହିଲ ସମ୍ଭାଳି
'ବୋଇଲି ହୃଦ୍ ଦେବ ଢାଳି
ଆହେ କଏ ମୋତେ ? ପିଇ ମୁଁ ବହୁ ସ୍ରୋତେ
ମୋ ହୃଦ ଗଲ ଭଳି ଭଳି ।
(ଜଗପ୍ରୀତ ମଧୁସୂଦନ)

ବିଶ୍ଳେଷଣ :— ଏଠାରେ ମେଘ ଡାକରେ ନଦୀର ଗତି ଅସମ୍ଭାଳ ହେବ ଏକ ଅପ୍ରସ୍ତୁତ ବୃତ୍ତାନ୍ତ । ଏହି ଅପ୍ରସ୍ତୁତ ବିଶେଷ ଅର୍ଥରୁ ନଦୀ ସ୍ଫୀତ ବର୍ଷା ହେବା ଓ ବାଧା ଆସିବା ଆଦି ସାମାନ୍ୟ ପ୍ରସ୍ତୁତ ଅର୍ଥର ପ୍ରତ୍ୟୟ ଜନ୍ମୁଥିବାରୁ ଅପ୍ରସ୍ତୁତ ପ୍ରଶଂସା ହେଲା ।

## ବକ୍ରୋକ୍ତି

ଯେଉଁ କଥା ସୁନ୍ଦର ବାକ୍ୟରେ 'ବକ୍ର' ଶବ୍ଦ ପ୍ରୟୋଗ ହେତୁ କୌଣସି ପଦାର୍ଥର ଉତ୍କର୍ଷ ବା ଅପକର୍ଷ ବର୍ଣ୍ଣିତ ହୁଏ ସେଠାରେ ଏହି ଅଳଙ୍କାର ହୁଏ ।

ଉଦାହରଣ :— (୧) କାନ୍ତା ବିନା କାନ୍ତ-ପ୍ରାଣ ସୁଖରେ ବିକଳ
ବିକଳ ଜୀବନ ମଣେ ଜଗତ ବିଫଳ ।
( ତପସ୍ୱିନୀ )

ବିଶ୍ଳେଷଣ :— ଏଠାରେ କାନ୍ତା ବିନା କାନ୍ତ ଜୀବନ ନିରର୍ଥକ ହେବା ସୂଚିତ ହୋଇଥିବାରୁ ବିନୋକ୍ତି ଅଳଙ୍କାର ହେଲା ।

(୨) ଅଳକା ଉର୍ଦ୍ଧ୍ୱେ ଝିଲମିଲ ମାଳୀ
ଝଟକେ ଝଟକେ ଖଞ୍ଜିଲେ ଆଳୀ
ଏମନ୍ତ ଅଦ୍ଭୁତ ନ ଥିଲା ଦେଖା
ବିନା ମେଘରେ ସ୍ଥିର ବିଦ୍ୟୁତରେଖା । (ଲ:ବ:)

ବିଶ୍ଳେଷଣ :— ଏଠାରେ ବିନା ଶବ୍ଦ ପ୍ରୟୋଗ ହେତୁ ପଦର ଉତ୍କର୍ଷ ପ୍ରତିପାଦିତ ହୋଇଥିବାରୁ ବିନୋକ୍ତି ଅଳଙ୍କାର ହେଲା ।

(୩) ବିମଳା ଲେଖନ୍ତି • ବହନ୍ତ ସନ୍ତାପ
ସୁବର୍ଣ୍ଣ ହୋଇଲେ ରମା
ଚନ୍ଦ୍ରିକା ରଜନୀ ପ୍ରୁଢ଼ଗଲେ ଭଲେ
କାଳିମା ବିନା ନିଶାମା ।

ବିଶ୍ଳେଷଣ :— ଏଠାରେ ବିମଳାର ବିରହକୁ ରମାର ସୁବର୍ଣ୍ଣ ଭାବ ଓ ଚନ୍ଦ୍ରିକା ବିନା ନିଶାମାର ମଳିନତା ରୂପ ଅଶୋଭନତ୍ୱ କଥିତ ହୋଇବାରୁ ବିନୋକ୍ତି ଅଳଙ୍କାର ହେଲା ।



# ରସବାଦ

**କାବ୍ୟ ଓ ରସ :—**

କାବ୍ୟ-ଶାସ୍ତ୍ରରେ ରସର ଭୂମିକା ଅତି ମହତ୍ତ୍ୱପୂର୍ଣ୍ଣ । ରସ, କାବ୍ୟର ପ୍ରାଣ । ରସାସ୍ୱାଦନ କାବ୍ୟ ଅଧ୍ୟୟନର ପ୍ରଧାନ ଆକର୍ଷଣ । ଶବ୍ଦ ଓ ଅର୍ଥର ସାବଲୀଳ ସଂଯୋଜନା କାବ୍ୟକୁ ବୈଶିଷ୍ଟ୍ୟ ଦିଏ—ଚର୍ତ୍ତିବେଟକ କରେ । ମାତ୍ର ମର୍ମାନୁଭବ ଓ ହୃଦୟ ସଂବେଦନ ପାଇଁ ରସର ଅବତାରଣା ହିଁ ଏକମାତ୍ର ଅବଲମ୍ବନ । ରସ, ମର୍ମସ୍ପର୍ଶକ ଓ ହୃଦୟ ସଂବେଦନୀ ଅନୁଭୂତିର ପ୍ରାଣବନ୍ତ ପ୍ରଦର୍ଶକ । 'ରସ'ର ସାଧାରଣ ଅର୍ଥ ଆସ୍ୱାଦନ—ଯାହାହିଁ ଆସ୍ୱାଦ୍ୟ ତାହାହିଁ ରସ । ରସ ବ୍ୟୁତ୍ପତ୍ତିରୁ ଜଣାଯାଏ; 'ରସ୍ୟତେ ଇତି ରସଃ କିମ୍ବା ସରତେ ଇତି ରସଃ ।' ଅର୍ଥାତ୍ ଯାହା ଆସ୍ୱାଦିତ, ତାହାହିଁ ରସ । ତେଣୁ ରସ ଏକ ଆସ୍ୱାଦ୍ୟ ସ୍ୱରୂପ କିମ୍ବା ଯାହା ପ୍ରବହମାନ ତାହାହିଁ ରସ । ଦ୍ରବତ୍ୱ ରସର ମଧ୍ୟ ଅନ୍ୟ ଏକ ବିଶେଷଣ । ପୁଣି ରସ ଚର୍ବଣାର ଅବସ୍ଥା ଏକ ଅଲୌକିକ ଅବସ୍ଥା— ରସ ଆସ୍ୱାଦନ ସମୟରେ ମଣିଷର ସମସ୍ତ ଲୌକିକ ତଥା ଭୌତିକ ସତ୍ତା ଲୋପ ପାଏ । ସେ ଏକ ଦେଶସ୍ୱାନ୍ତର ଜଗତକୁ ଆଶ୍ରୟ କରି ରସାସ୍ୱାଦନ କରେ । ତେଣୁ ରସକୁ ବ୍ରହ୍ମାନନ୍ଦ ସହୋଦର ବୋଲି ଆଳଂକାରିକମାନେ ଅଭିହିତ କରିଥାନ୍ତି । ରସ ବ୍ରହ୍ମାନନ୍ଦ ନୁହେଁ ।

ବରଂ ବ୍ରହ୍ମାନନ୍ଦ ସହୋଦର । କାରଣ ବ୍ରହ୍ମାନନ୍ଦ ପ୍ରାପ୍ତିରେ ମଣିଷ ଭୌତିକ ଜଗତକୁ ପୁନର୍ବାର ଫେରି ପାରେନା । ତା'ର ସମସ୍ତ ପାର୍ଥିବ ଭାବ ଲେପ ପାଇ ଯାଇଥାଏ । ମାତ୍ର ରସାସ୍ୱାଦନ ମୁହୂର୍ତ୍ତରେହିଁ ପାଠକ ବା ଦର୍ଶକ ଭୌତିକ ଜଗତର ଊର୍ଦ୍ଧ୍ୱରେ ଥାଏ— ପର ମୁହୂର୍ତ୍ତରେ ତାକୁ ପୁଣି ଭୌତିକ ଜଗତକୁ ଫେରି ଆସିବାକୁ ହୁଏ । ଯାହାକି ବ୍ରହ୍ମାନନ୍ଦ ଅବବୋଧ ପରେ ସମ୍ଭବ ନୁହେଁ । ତେଣୁ ରସକୁ ବ୍ରହ୍ମାନନ୍ଦ ନ କହି ବ୍ରହ୍ମାନନ୍ଦ ସହୋଦର ବୋଲି କହିଥାନ୍ତି । ଏପରି ଏକ ଗୁରୁତ୍ୱପୂର୍ଣ୍ଣ ରସବାଦର ପରିକଳ୍ପନା ପ୍ରଥମେ ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନିଙ୍କ ଦ୍ୱାରା କରାଯାଇଥିଲା । ସେ ରସ ତତ୍ତ୍ୱର ନାଟକର ଦୃଷ୍ଟିକୋଣରୁ ତାଙ୍କ ଶାସ୍ତ୍ରରେ ଉଲ୍ଲେଖ କରିଥିଲେ— ଦୃଶ୍ୟ କାବ୍ୟରେ ରସ ତତ୍ତ୍ୱର, କାବ୍ୟରେ ରସ ତତ୍ତ୍ୱର ସହ ପ୍ରାୟତଃ ସମଧର୍ମୀ ବୋଲି ଧରି ନିଆ ଯାଇଥାଏ ।

ଭରତ ମୁନି ରସକୁ ଶ୍ରେଷ୍ଠତ୍ୱ ପ୍ରଦାନ କରିଅଛନ୍ତି । କାବ୍ୟରେ ରସହିଁ ମୂଳବସ୍ତୁ । ବୀଜରୁ ଯେପରି ବୃକ୍ଷର ଉତ୍ପତ୍ତି ଏବଂ ବୀଜହିଁ ଯେପରି ବୃକ୍ଷର ବପୁ କୋଷରେ ଏକମାତ୍ର ମୂଳପିଣ୍ଡ ଠିକ୍ ସେହିପରି ରସ କାବ୍ୟ ସଂପୃକ୍ତ ସମସ୍ତ ଭାବ ଏ ଭାବର ମୂଳ । (୧)

କେବଳ ସେତିକି ନୁହେଁ— କାବ୍ୟର ଅନ୍ୟାନ୍ୟ ଆନୁସଂଗିକ ସାମଗ୍ରୀ ଯେପରି ଆଖ୍ୟାନ ବସ୍ତୁ, ଶୈଳୀ ଅଳଙ୍କାର ଆଦି ମୁଖ୍ୟ ନୁହେଁ । ରସହିଁ ଜୀବନ, ଏପରିକି କାବ୍ୟବିଦଗ୍ଧ

---

(୧). ଯଥା ବୀଜାଦ୍ ଭବେଦ୍ ବୃକ୍ଷୋ, ବୃକ୍ଷାତ୍ ପୁଷ୍ପଂ ଫଲଂ ତଥା
ତଥା ମୂଳଂ ରସା ସର୍ବେ ତେଭ୍ୟୋ ଭାବା ବ୍ୟବସ୍ଥିତାଃ ।

ବାଣୀ ଭଙ୍ଗି ; ଶବ୍ଦ ସୌକୁମାର୍ଯ୍ୟ, ପ୍ରକଟ୍ୟତର ସ୍ଥିତ ଥାଇ ସୁଦ୍ଧା ରସହିଁ କାବ୍ୟର ଜୀବନ (୧) । ତେଣୁ ରସ ବ୍ୟଞ୍ଜିତ ପଦ ନିର୍ମାଣ ହିଁ କବି କର୍ମ । ଅନ୍ୟ ଦୃଷ୍ଟିରେ ଦେଖିଲେ ମନେହୁଏ ଯାହା ରସାତ୍ମକ ତାହାହିଁ କାବ୍ୟ (୨) । ବାକ୍ୟଟି ରସଗର୍ଭିତ ହେଲେ ତାହା କାବ୍ୟର ମର୍ଯ୍ୟାଦା ଲାଭ କରେ ।

ଏହି ରସର ପରିଭାଷା ଓ ପରିଚୟ ଅତି ବ୍ୟାପକ । ଅଳଙ୍କାର ଶାସ୍ତ୍ରରେ ରସ ପରିଚୟ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

**ରସ ପରିଚୟ** :— ରସ, ଅନୁଭୂତିଶୀଳ ସହୃଦୟ ଚିତ୍ତର ଆନନ୍ଦମୟ ଏକ ମାନସିକ ଅବସ୍ଥା ମାତ୍ର । ଯାହାକି ସହୃଦୟ ପାଠକ ହୃଦୟକୁ ଦ୍ରବୀଭୂତ, ମନକୁ ତନ୍ମୟ, ଶରୀରକୁ ପୁଲକିତ ଓ ଭାବ ବ୍ୟାପାରକୁ ଏକାଗ୍ରୀଭୂତ କରେ । କାବ୍ୟ ପାଠ ଦ୍ୱାରା ସହୃଦୟ ସାମାଜିକ ପାଠକ ମନରେ କାବ୍ୟ ଅନୁରୂପ ଭାବ ସଂଗୃହୀତ ହୋଇ ତାହାକୁ ଏପରି ଏକ ବିସ୍ମୟ ନିରପେକ୍ଷ ଜଗତକୁ ନେଇଯାଏ ଯେ ସେ ସେଠାରେ ଭାବାନନ୍ଦରେ ତନ୍ମୟ ହୋଇଯାଏ । ଫଳରେ କାବ୍ୟର ଭାବାନୁଭୂତି ସହିତ ପାଠକ ଚିତ୍ତର ଏକାତ୍ମତା ଜନ୍ମେ । ସେତେବେଳେ କାବ୍ୟସ୍ଥ ନାୟକ ନାୟିକାଙ୍କ ଗୁଣ ପ୍ରକୃତି ମଧ୍ୟରେ ପାଠକଙ୍କ ଆତ୍ମ-ବିଲୁପ୍ତି ସଂଶୋଧିତ ହୋଇଯାଏ । ଏହି ଆତ୍ମ ବିଲୁପ୍ତି ହେତୁ ସେ ଭାବ ଜଗତର ଭୂମିସ୍ଥ ଲୋକରେ ଉପନୀତ ହୋଇ ଅଲୌକିକ ଆନନ୍ଦ ଅନୁଭବ କରେ । ଏହି ଦିବ୍ୟ ଅନୁଭୂତ ସଂଜାତ ଆନନ୍ଦମୟ ନିର୍ମଳ ଅବସ୍ଥାହିଁ ରସ ।

---

(୧) ବାଗ୍‌ବୈଦଗ୍ଧ୍ୟ ପ୍ରଧାନେପି ରସ ଏବାତ୍ର ଜୀବିତମ୍ ।
(୨) ବାକ୍ୟଂ ରସାତ୍ମକଂ କାବ୍ୟଂ— ବିଶ୍ୱନାଥ—

ରସ ଅଲୌକିକ ଚମତ୍କାର ଆନନ୍ଦବୋଧର ଆଧାର । ରସବୋଧରେ ଚିତ୍ତର ବିସ୍ତାର ଓ ହୃଦୟର ସମତାନ୍ତୁ ସଂଘଟିତ ହୋଇଥାଏ ।

ଏହି ରସବୋଧ ବା ରସାଭିବ୍ୟକ୍ତି ଶୁଦ୍ଧ ଆକସ୍ମିକ ନୁହେଁ, ବରଂ ସୋପାନାନୁକ୍ରମିକ । ଭରତଙ୍କ ନିଷ୍ପତ୍ତିସୂତ୍ରର ଉଚ୍ଚକୋଟି ସୋପାନ ଅନୁକ୍ରମେ ରସ ଅଭିବ୍ୟକ୍ତି ସଂସାଧିତ ହୋଇଥାଏ ।

**ରସ ଅଭିବ୍ୟକ୍ତି** — ରସାଭିବ୍ୟକ୍ତି ନିମିତ୍ତ ସ୍ଥାୟୀଭାବ ହିଁ ଏକାନ୍ତ ଅପରିହାର୍ଯ୍ୟ । ରସର ଉତ୍ପତ୍ତି ଏହି ସ୍ଥାୟୀଭାବରୁ ; ମଣିଷ ଯେ କୌଣସି ଅବସ୍ଥାରେ ଥାଉ ନା କାହିଁକି ତାର ହୃଦୟରେ ସେ କୌଣସି ନା କୌଣସି ଭାବର ଉପସ୍ଥିତି ଅନୁଭବ କରୁଥାଏ । ଭାବଶୂନ୍ୟ ଅବସ୍ଥା ପ୍ରାପ୍ତି ସାଧାରଣ ଜୀବନରେ ମଣିଷ ପକ୍ଷରେ ସମ୍ଭବ ନୁହେଁ । ମଣିଷ ସାଧାରଣ ଅବସ୍ଥାରେ ଥାଇ ମନରେ ବହୁଭାବ ବା ଚିନ୍ତାର ସଂଚରଣ ଅନୁଭବ କରେ । ସେ ଗୁଡ଼ିକ ଅନେକ କ୍ଷଣକ ପାଇଁ ମନରେ ଉଦିତ ହୋଇ କ୍ଷଣିକ ମଧ୍ୟରେ ତିରୋହିତ ହୋଇ ଯାଆନ୍ତି । କେତେକ ପୁଣି ବାସନା ରୂପରେ ଅନ୍ତଃସ୍ଥଳରେ ସୁପ୍ତ ଅବସ୍ଥାରେ ଥାନ୍ତି । ଅନୁକୂଳ ପରିବେଶ ପ୍ରାପ୍ତିରେ ସେ ଗୁଡ଼ିକ ପୁଣି ଜାଗ୍ରତ ହୋଇଥାନ୍ତି । ଅନ୍ତଃସ୍ଥଳରେ ସଞ୍ଚରୁଥିବା ଭାବପୁଞ୍ଜର ମଧ୍ୟରୁ ଯେଉଁଗୁଡ଼ିକ ବାସନାତ୍ମକ ହୋଇ ଚିତ୍ତରେ ଚିରକାଳ ସ୍ଥିର, ଅଟଳ ଅବସ୍ଥାରେ ଅବସ୍ଥାନ କରୁଥାନ୍ତି ସେଇମାନଙ୍କୁ ସାଧାରଣତଃ ସ୍ଥାୟୀଭାବ କହୁଥାନ୍ତି (୧) । ଯେମିତି ଅବସ୍ଥାରେ

(୧) ବହୂନାଂ ଚିତ୍ତବୃତ୍ତିରୂପାଣାଂ ଭାବାନାଂ ମଧ୍ୟେ ଯସ୍ୟ ବହୁଳଂ ।
ରୂପଂ ଯଥୋପଲଭ୍ୟତେ ସ ସ୍ଥାୟୀଭାବଃ ।

ଥାଉ ନା କାହିଁକି ମଣିଷର ରତି, ରତ, ହାସ, ଶୋକ, ଭୟ, ବିସ୍ମୟ ଆଦି ଷଭଲ୍ଲ ଭାବ ମଧ୍ୟରୁ ସମାନ୍ତର ନ ହେଲେ ବି କୌଣସି ରୋଟିକ ଦ୍ୱାରା ପରିପୁଷ୍ଟ ହୋଇ ରହିଥାଏ । ଏହି ସ୍ଥାୟୀଭାବର ବର୍ତ୍ତମାନରେ ଅନ୍ୟ ସମସ୍ତ ଭାବର ବିଲୟ ଘଟେ । ସ୍ୱଜାତୀୟ ତଥା ବିଜାତୀୟ କୌଣସି ଭାବ ଏହାକୁ ନଷ୍ଟ କରି-ପାରେ ନାହିଁ (୧) । ଏହା ରସାସ୍ୱାଦର ମୌଳିକ ଅବଲମ୍ବନ ହୋଇ ବିରାଜିଥାଏ ଏବଂ ବିଭାବ, ଅନୁଭାବ, ସଂଚାରୀଭାବ ଦ୍ୱାରା ପରିପୁଷ୍ଟ ହୋଇ ରସ-ପରିଣତିର ସହାୟକ ହୁଏ ।

ଏହି ସ୍ଥାୟୀଭାବର ଭୂମିକା ଅତି ମହନୀୟ । ପ୍ରଜାଙ୍କ ଠାରୁ ରାଜାଙ୍କର ଆସ୍ଥାନ, ଶିଷ୍ୟଙ୍କଠାରେ ଗୁରୁଙ୍କର ସ୍ଥାନ ଯେପରି ମହନୀୟ ଠିକ୍ ସେହିପରି ବହୁଭାବ ମଧ୍ୟରେ ସ୍ଥାୟୀ ଭାବହିଁ ମହନୀୟ ଭାବ (୨) ।

ସ୍ଥାୟୀ ଭାବହିଁ କେବଳ ରସାବସ୍ଥା ପର୍ଯ୍ୟନ୍ତ ପହଞ୍ଚି ପାରେ । ଅନ୍ୟ ସଂଚାରୀଭାବ ରସ ପରିଣତିରେ ପହଞ୍ଚିଲା ବେଳକୁ ତିରୋହିତ ହୋଇ ଯାଉଥାନ୍ତି । ତେଣୁ ସ୍ଥାୟୀଭାବ ହିଁ ରସୋତ୍ପତ୍ତିର ଅଧିକାରୀ । ସ୍ଥାୟୀଭାବ ରସାବସ୍ଥା ପ୍ରାପ୍ତ ହେଲାବେଳକୁ ତାକୁ କେତୋଟି ସୋପାନ ଅତିକ୍ରମ କରିବାକୁ ପଡ଼େ ।

---

(୧) ଅବିରୁଦ୍ଧା ବିରୁଦ୍ଧା ବା ଯଂ ତିରୋଧାତୁ ମକ୍ଷମାଃ,
ଆସ୍ୱାଦାଙ୍କୁରକନ୍ଦୋଽସୌ ଭାବ ସ୍ଥାୟୀତି ସଂମତଃ ।
(ସାହିତ୍ୟ ଦର୍ପଣ)

(୨) ଯଥା ନରାଣାଂ ନୃପତିଃ ଶିଷ୍ୟାଣାଂ ଚ ଗୁରୁଃ ।
ଏବଂ ହି ସର୍ବଭାବାନାଂ ଭାବଃ ସ୍ଥାୟୀ ମହାନିହ (ନାଟ୍ୟଶାସ୍ତ୍ର)

ବିଭାବ, ଅନୁଭାବ ଓ ସଂଚାରୀ ଭାବର ସଂଯୋଗରେ ସ୍ଥାୟୀଭାବ ରସ-ପରିପକ୍ୱତା ଲାଭକରେ । ତେଣୁ "ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗା ଦ୍ରସନିଷ୍ପତ୍ତିଃ ବୋଲି ଭରତ ତାଙ୍କ ନାଟ୍ୟ ଶାସ୍ତ୍ରରେ ଉଲ୍ଲେଖ କରିଛନ୍ତି ।

ସହୃଦୟ ପାଠକ ହୃଦୟରେ ବାସନା ବା ଚିତ୍ତବୃତ୍ତି ରୂପରେ ବର୍ତ୍ତମାନ ରତ୍ୟାଦି ସ୍ଥାୟୀଭାବ; = ବିଭାବ, ଅନୁଭାବ ଓ ସଂଚାରୀଭାବ ଦ୍ୱାରା ପରିପୁଷ୍ଟ ହୋଇ ରସରେ ପରିଣତ ହୁଏ (୧) ।

ସୁତରାଂ ପ୍ରକୃତ ପକ୍ଷେ ଏହି ସ୍ଥାୟୀଭାବର ଅଭିବ୍ୟକ୍ତି ହିଁ ରସ କିମ୍ୱା ପାଠକ ଚିତ୍ତରେ ଅଭିବ୍ୟକ୍ତ ତାର ନିଜସ୍ୱ ସ୍ଥାୟୀଭାବ ଏବଂ ତା'ର ପ୍ରତୀତି ହିଁ ରସ ।

ଆଚାର୍ଯ୍ୟ ଅଭିନବଗୁପ୍ତ ରସର ଅଭିବ୍ୟକ୍ତି ସମ୍ପର୍କରେ ମତ ଦେବାକୁ ଯାଇ କହନ୍ତି :—

"ଶବ୍ଦ ସମର୍ପ୍ୟମାଣ-ହୃଦୟ ସଂବାଦ ସୁନ୍ଦର—
ବିଭାବାନୁଭାବ ସମୁଚିତ- ପ୍ରାଗ୍‌ବିନିବିଷ୍ଟ ରତ୍ୟାଦି
ବାସନାନୁରାଗ ସୁକୁମାର- ସ୍ୱସଂବିଦାନନ୍ଦ ଚର୍ବଣା
ବ୍ୟାପାର ରସନୀୟ ରୂପୋ ରସଃ ।

(ଧ୍ୱନ୍ୟାଲୋକ- ଲୋଚନ)

---

(୧) ବିଭାବେନାନୁଭାବେନ ବ୍ୟକ୍ତଃ ସଂଚାରିଣା ତଥା
ରସତାମେତି ରତ୍ୟାଦିଃ ସ୍ଥାୟୀଭାବ ସଚେତସାମ୍ ।
(ସାହିତ୍ୟ ଦର୍ପଣ)

ଏଇ ଶ୍ଳୋକଟିରେ କବିର କାବ୍ୟ ରଚନା ଠାରୁ ଆରମ୍ଭ କରି କାବ୍ୟପାଠାନ୍ତେ ସହୃଦୟ ପାଠକ ଚିତ୍ତର ରସୋଦ୍ରେକ ପର୍ଯ୍ୟନ୍ତ ବିକାଶ କ୍ରମର ପରିଚୟ ସୂଚିତ ହୋଇଛି । ବିଶ୍ଳେଷଣରୁ ଏହାର ସତ୍ୟାସତ୍ୟ ଜାଣିହେବ ।

ବିଶ୍ଳେଷଣ :— କାବ୍ୟର ଉପାଦାନ ଶବ୍ଦ । ଏହି ଶବ୍ଦ ସାହାଯ୍ୟରେ କବି ଅଭିନବତ୍ୱ ସ୍ଥାୟୀଭାବର ଅନୁଗତ କରି ବିଭାବ ଅନୁଭାବର ସଂଯୋଜନା କରେ । ପାଠକ କାବ୍ୟପାଠ କଲାବେଳେ ପ୍ରଥମେ ଏହି ବିଭାବ ଅନୁଭାବର ଅର୍ଥ ଉପଲବ୍ଧି କରେ । ତତ୍ପରେ ପାଠକ ସହୃଦୟ ହୋଇଥିଲେ— ହୃଦୟ ସଂବାଦ, ଅର୍ଥାତ୍ ଆତ୍ମ ପରିଚୟ ବୋଧ ବା କବି ଓ ପାଠକର ଭାବ ସମଧର୍ମୀତା ଦ୍ୱାରା ପାଠକ ଚିତ୍ତରେ କାବ୍ୟ ଅନୁରୂପ ସ୍ଥାୟୀଭାବର ଉଦ୍ରେକ ହୁଏ । ଏହି ଭାବ ଜାଗରଣ ବା ଉଦ୍‌ବୋଧନ ଫଳରେ କାବ୍ୟର ବିଭାବ ଅନୁଭାବ ପାଠକ ଚିତ୍ତରେ ସଂଯୋଜିତ ହୋଇ ସୁନ୍ଦର ବା ସୁକୁମାର ହୋଇ ଉଠେ । ଏହି ଅଭିନବ ଅଭିରାମ ବିଭାବାନୁଭାବ ପାଠକ ଚିତ୍ତର ସହଜାତ ସଂସ୍କାର ରୂପୀ ବାସନାକୁ ରଞ୍ଜିତ କରେ । ବିଭାବାନୁଭାବ ଦ୍ୱାରା ସୁରଞ୍ଜିତ ଏହି ବାସନା ପାଠକର ସ୍ୱ-ସଂବିତ୍‌କୁ ଅନୁରଞ୍ଜିତ କରି କାନ୍ତିମୟ କରେ । ରସ ଗୋଟିଏ ସଂବିତ୍-ମାତ୍ର । ସଂବିତ୍ ଓ ଆନନ୍ଦ ଅଭିନ୍ନ । କିନ୍ତୁ ଏଠାରେ ସଂବିତ୍ ବିଭାବାନୁଭାବ ରଞ୍ଜିତ ବାସନାର ଅନୁରଞ୍ଜନରେ ସୁକୁମାର ହୋଇଥିବା ହେତୁ ଆନନ୍ଦଟି ପରିପୂର୍ଣ୍ଣ ନ ହୋଇ ବିଶିଷ୍ଟ ମାତ୍ର ହୋଇଥାଏ । ଏହି ବିଶିଷ୍ଟ ଆନନ୍ଦ ସଂବେଦ ଚର୍ବଣା ବ୍ୟାପାର ଏବଂ ଏହା ଦ୍ୱାରା ରସନୀୟ ବା ସ୍ୱାଦୁ ହେବା ଅବସ୍ଥାର ସୃଷ୍ଟି —ତାହାହିଁ ରସ ।

ତେବେ- ସ୍ଥାୟୀଭାବ- ବିଭାବ- ଅନୁଭାବ- ସଂଚାରୀଭାବର ସମ୍ମେଳନ ଭିନ୍ନ ରସ ନିଷ୍ପତ୍ତି ସଂପୂର୍ଣ୍ଣ ଅସଂଭବ । ସ୍ଥାୟୀଭାବ ସଂପର୍କରେ ଅନେକ ବୃତ୍ତି ପ୍ରଦତ୍ତ ହେଲଣି । • ଏଠାରେ କେବଳ ବିଭାବ- ଅନୁଭାବ ଓ ସଂଚାରୀ ଭାବର ପରିଚୟ ଦିଆଗଲା ।

ବିଭାବ :— ରତି, ଭୟ, କ୍ରୋଧ ଆଦି ଭାବଗୁଡ଼ିକ ସାମାଜିକ ହୃଦୟରେ ସୁପ୍ତ ଅବସ୍ଥାରେ ବିଦ୍ୟମାନ । କୌଣସି କାରଣରୁ ସେ ଗୁଡ଼ିକ ଜାଗ୍ରତ ହୋଇ ହୃଦୟରେ ଅନୁଭୂତ ହେଲେ ସେହି କାରଣକୁ ବିଭାବ ଆଖ୍ୟା ଦିଆଯାଇଥାଏ । ଅର୍ଥାତ୍ ଯାହା ଭାବର କାରଣ ତାହାହିଁ ବିଭାବ । ସଂକ୍ଷେପରେ କହିଲେ, ଯେଉଁ ବର୍ଣ୍ଣନୀୟ ବସ୍ତୁ ବ୍ୟକ୍ତି ବା ଘଟଣା ଦ୍ୱାରା ସ୍ଥାୟୀଭାବ ଜାଗରିତ ହୋଇ ରସରୂପ ଧାରଣ କରେ ତାହାକୁ ବିଭାବ କୁହାଯାଏ । ଉଦାହରଣ ସ୍ୱରୂପ— ସୀତା, ଲାବଣ୍ୟବତୀ ଇତ୍ୟାଦି ରାମ ଓ ଚନ୍ଦ୍ରଭାନୁଙ୍କର ଇତ୍ୟାଦି ଭାବର ପ୍ରକାଶକ । ସେମାନେ ଯେତେବେଳେ କାବ୍ୟ ନାଟକରେ ପରିବେଷିତ ହୁଅନ୍ତି ; କାବ୍ୟ ଶାସ୍ତ୍ରରେ ସେମାନଙ୍କୁ ବିଭାବ ରୂପେ ଅଭିହିତ କରାଯାଇଥାଏ । 'ବିଭାବ'ରୁ ରସ ଲତାର ଅଙ୍କୁରୋଦ୍‌ଗମ ହୋଇଥାଏ । ସ୍ଥାୟୀଭାବର ସୁପ୍ତ ଅବସ୍ଥା ନିର୍ବାପିତ ହୋଇ ବିଭାବ ଦ୍ୱାରା ରସ ପ୍ରକାଶର ଆଦ୍ୟ ଚେତନ ଅବସ୍ଥା ସୂଚିତ ହୁଏ । ଏହି ବିଭାବ ଦୁଇ ପ୍ରକାର— (୧) ଆଲମ୍ବନ
(୨) ଉଦ୍ଦୀପନ ବିଭାବ ।

ସ୍ଥାୟୀଭାବର ଉଦ୍ଦୀପନ ବା ରସର ସୃଷ୍ଟି ପାଇଁ ଯେଉଁ ବ୍ୟକ୍ତି ବସ୍ତୁ ବା ଘଟଣା ପ୍ରଭୃତିର ଉପସ୍ଥିତି ଅନିବାର୍ଯ୍ୟ କିମ୍ବା ଯାହାକୁ ଅବଲମ୍ବନ କରି ଭାବର ଉଦ୍ରେକ ହୋଇଥାଏ ତାହାକୁ ଆଲମ୍ବନ

ବର୍ଣ୍ଣନ କରାଯାଏ । କାବ୍ୟ ବା ନାଟକର ନାୟକ- ନାୟିକା ପରସ୍ପର ଉପରେ ଆଶ୍ରୟ କରି ଭାବ ଉଦ୍ରେକରେ ସହାୟତା କରୁ-ଥିବାରୁ ସେମାନଙ୍କୁ ଆଲମ୍ବନ କହନ୍ତି ।

ଜାଗ୍ରତ ଭାବର ପ୍ରାଥମିକ ଉଦ୍ଦୀପନ ପାଇଁ ଯେଉଁ ସ୍ଥାନ, କାଳ, ବେଶ ଭୂଷଣ ପ୍ରଭୃତ ସହାୟକ କାରଣ ହୁଏ ତାହାକୁ ଉଦ୍ଦୀପନ ବିଭାବ କହୁଥାନ୍ତି । ଯେବେଠାରେ ନାୟକ ନାୟିକାଙ୍କ ମନରେ ରତି ଭାବର ଉଦ୍ରେକ ହେଲା ; ଏହି ରତି ଭାବ ଜାଗ୍ରତ ହେଲା ପରେ ପରର ବସନ୍ତର ମୃଦୁମଳୟ ; ଭ୍ରମରର ଗୁଞ୍ଜନ, କୋକିଳର ରବ, ଚନ୍ଦନର ପ୍ରଲେପନ, ନିର୍ଜନ ବେଳାଭୂମି, ପ୍ରସାଧନ ଇତ୍ୟାଦି ରତି ଭାବକୁ ଅଧିକ ଉଦ୍ଦୀପ୍ତ କରେ । ତେଣୁ ସେ ଗୁଡ଼କୁ ସହାୟକ କାରଣ ରୂପେ ଉଦ୍ଦୀପନ ବିଭାବରେ ଅନ୍ତର୍ଭୁକ୍ତ କରାଯାଇଥାଏ ।

**ଅନୁଭାବ— ଅନ୍ତର୍ମୁଖୀ (Feeling)—**

ବିଭାବ ଦ୍ୱାରା ଭାବର ଉଦ୍ରେକ ହେଲା ପରେ ମାନସିକ ସ୍ତରରେ ସେହି ଉତ୍ତେଜନା ଗୁଡ଼ିକର କେତେ ଗୁଡ଼ିଏ ଶାରୀରିକ ତଥା ପ୍ରାକୃତିକ ଲକ୍ଷଣ ପ୍ରକାଶ ପାଇଥାଏ । ଏଗୁଡ଼ିକୁ ଅନୁଭାବ କହୁଥାନ୍ତି । ବାସ୍ତବିକ୍ ଏହି ଅନୁଭାବ ଗୁଡ଼ିକ ମନରେ ଉଦ୍‌ବୁଦ୍ଧ ହୋଇଥାଏ । ଏହା ଭାବର କ୍ରିୟାତ୍ମକ ରୂପମାତ୍ର (Expression in action), ଶାରୀରିକ ଲକ୍ଷଣହିଁ ଅନୁଭାବ । ଏହା ଭାବର ଅନୁବର୍ତ୍ତୀ । ଅନୁଭାବ ଦୁଇପ୍ରକାର— (୧) ସ୍ୱଭାବଜ ବା ସାତ୍ତ୍ୱିକ (୨) ଆଙ୍ଗିକ ।

ଭାବର ଜାଗରଣ ପରେ କେତେଗୁଡ଼ିଏ ଶାରୀରିକ ଲକ୍ଷଣ ଚେଷ୍ଟାକୃତ କର୍ମଦ୍ୱାରା ପ୍ରକାଶିତ ହୋଇଥାଏ । ଆଉ କେତେକ

ସ୍ୱତଃ କୌଣସି ପ୍ରଯତ୍ନ ବ୍ୟତୀତରେ ପ୍ରକାଶିତ ହୁଏ । ଯେଉଁଗୁଡ଼ିକ କୌଣସି ପ୍ରଯତ୍ନ ବା ପ୍ରଚେଷ୍ଟାକୁ ଅପେକ୍ଷା ନ ରଖି ଆପେ ଆପେ ପ୍ରକାଶିତ ହୁଏ, ତାହାକୁ ସ୍ୱଭାବଜଃ ବା ସାତ୍ତ୍ୱିକ କୁହାଯାଇଥାଏ । କିନ୍ତୁ ଯେଉଁଗୁଡ଼ିକ ପ୍ରଯତ୍ନସାପେକ୍ଷ ବା ଚେଷ୍ଟାକୃତ ଯଥା— ଭ୍ରୂବିକ୍ଷେପ, କଟାକ୍ଷ, ସ୍ମିତହାସ୍ୟ, ଅପାଙ୍ଗ ଦୃଷ୍ଟି ଆଦି ଅଂଗଜ ଅନୁଭାବ ।

ସାତ୍ତ୍ୱିକଭାବ ଜୀବନ ନିଃଶ୍ୱାସର ସଂବନ୍ଧ ଚେଷ୍ଟା । ଯାହା ଜୀବ ଶରୀରସହ ସଂଯୁକ୍ତ ତାହା ସାତ୍ତ୍ୱିକ (୧) ସତ୍ତ୍ୱ ଅର୍ଥାତ୍ ହୃଦୟରୁ ଉତ୍ପନ୍ନ ଚେଷ୍ଟାର ନାମ ସାତ୍ତ୍ୱିକ ।

ଏହି ସାତ୍ତ୍ୱିକ ଅନୁଭାବକୁ ମର୍ଯ୍ୟାଦା ଦେଇ ଆଚାର୍ଯ୍ୟ ହେମଚନ୍ଦ୍ର କହନ୍ତି— "ପ୍ରାଣହିଁ ସତ୍ତ୍ୱ ।" ଏଥିରୁ ଉତ୍ପନ୍ନ ଭାବ ସାତ୍ତ୍ୱିକ । ପ୍ରାଣରେ ସତ୍ତ୍ୱଭାବ ଗୁଡ଼ିକ ବହିଃସ୍ଥ ଭାବରେ ଉଦ୍‌ବୁଦ୍ଧ ହୋଇ ନ ଥାନ୍ତି । କୌଣସି ଭାବ ବହିଃସ୍ଥ ଭାବରେ ପ୍ରାଣରେ ଉଦ୍‌ବୁଦ୍ଧ ହେଲେ ସେଠି ସାତ୍ତ୍ୱିକ ଲକ୍ଷଣ ପ୍ରକାଶ ପାଇଥାଏ । ଏହା ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ ଭେଦରେ ଆଠ ପ୍ରକାର ।

ପଞ୍ଚଭୂତ ପ୍ରାଣରେ ସ୍ଥିତ ତତ୍ତ୍ୱ ଗୁଡ଼ିକର ପ୍ରାଧାନ୍ୟ ପରି- ଲକ୍ଷିତ ହେଲେ ସ୍ତମ୍ଭ ଅପ ବା ଜଳ ତତ୍ତ୍ୱର ପ୍ରାଧାନ୍ୟରେ ଅଶ୍ରୁ, ତେଜ ପ୍ରାଧାନ୍ୟରେ ସ୍ୱେଦ ଓ ଅଭାବରେ ବୈବର୍ଣ୍ଣ୍ୟ, ମରୁତ ଭାବର ପ୍ରାଧାନ୍ୟରେ ରୋମାଞ୍ଚ, ସ୍ୱରଭଙ୍ଗ ଓ ବେପଥୁ ଏବଂ ବ୍ୟୋମ ବା ଆକାଶ ଭାବ ପ୍ରାଧାନ୍ୟରେ ପ୍ରଳୟ ଆଦି ସାତ୍ତ୍ୱିକ ଲକ୍ଷଣର ପ୍ରକାଶ ସାଧିତ ହୋଇଥାଏ ।

**ବ୍ୟଭିଚାରୀ ଭାବ :—** ଏହା ରସ ପ୍ରବାହର ପରବର୍ତ୍ତୀ ଅବସ୍ଥା । ବ୍ୟଭିଚାରୀ ଶବ୍ଦ ବି + ଅଭି + ଚର୍ ଧାତୁରୁ ନିଷ୍ପନ୍ନ । ଅର୍ଥାତ୍ ବିଶେଷ ଭାବେ ରସର ଅଭିମୁଖରେ ଯିଏ ସଂଚାଳିତ ହୁଏ ତାହା ବ୍ୟଭିଚାରୀ ଭାବ । ଏଗୁଡିକ ଅନୁଭାବର ଅବ୍ୟବହିତ ପରେ ପ୍ରକାଶ ପାଇଥାଏ ଏବଂ ଉକ୍ତ ବୃଦ୍ଧ ଭାବକୁ ଅଧିକ ସ୍ପଷ୍ଟ କରିବା ଉଦ୍ଦେଶ୍ୟରେ ଅଭିପ୍ରେତ ହୋଇଥାଏ । ଏଗୁଡ଼ିକ ଦୀର୍ଘକାଳ ଧରି ସ୍ଥାୟୀ ହୋଇ ରହି ପାରନ୍ତି ନାହିଁ । ଏମାନେ କିଛିକ୍ଷଣ ପାଇଁ ପ୍ରକାଶିତ ହୋଇ ସ୍ଥାୟୀଭାବକୁ ପରିପୁଷ୍ଟ କରନ୍ତି ଏବଂ ତା'ପରେ ତିରୋହିତ ହୋଇ ଯାଆନ୍ତି । ଚଳମାନତା ଏମାନଙ୍କର ଧର୍ମ । ମୁଖ୍ୟତଃ ଭାବର ପରିସ୍ଫୁର୍ତ୍ତି ପାଇଁ ଏ ଗୁଡ଼ିକ ଆବର୍ତ୍ତିତ ଓ ତିରୋହିତ ହୋଇଥାନ୍ତି । ମନସ୍ତାତ୍ତ୍ୱିକ ବିଚାର ମଧ୍ୟ ଠିକ୍ ଏହିପରି କାରଣ ମନରେ କୌଣସି ଭାବ ସଞ୍ଚାର ହେବାପରେ ବ୍ୟକ୍ତି ଭାବାବିଷ୍ଟ ହୋଇ ତତ୍ପ୍ରସୂତ ଯେଉଁ କାର୍ଯ୍ୟ ବା ବ୍ୟବହାର ପ୍ରଦର୍ଶନ କରେ, ତାହାଦ୍ୱାରା ଭାବ ବୃଦ୍ଧି ପ୍ରାପ୍ତ ଓ ଦୀପ୍ତ ହୋଇଥାଏ । ଏହା ଦୈନ୍ୟ, ମୋହ, ସ୍ୱପ୍ନ, ବ୍ରୀଡ଼ାଦି ଭେଦରେ ତେତିଶ ପ୍ରକାର । ଉଦାହରଣ ସ୍ୱରୂପ— କୃଷ୍ଣଙ୍କ ବିଚ୍ଛେଦରେ ଗୋପୀକନ୍ୟାମାନେ କାରୁଣ୍ୟ ବିଚଳିତ ହୃଦୟରେ କରାଘାତ କରିବା ଧୂଳିରେ ଗଡ଼ିବା, ଅଶ୍ରୁମୋଚନ, ଦୈନ୍ୟ ପ୍ରକାଶ କରିବା ଆଦି ବ୍ୟଭିଚାରୀ ଭାବର ଅନ୍ତର୍ଗତ । ସୁତରାଂ ସୋପାନୁକ୍ରମିକ ଗତିରେ ଗମନ କରି ଭାବ ରସ ପରିଣତିରେ ପହଂଚିଥାଏ ଏବଂ ବିଭାବ, ଅନୁଭାବ ବ୍ୟଭିଚାରୀ ଭାବ ସଂଯୋଗରେ ହିଁ ରସର ନିଷ୍ପତ୍ତି ସାଧିତ ହୋଇଥାଏ ।

ମାତ୍ର ସାଧାରଣ ବିଚାରରେ ପ୍ରତୀତ ହୁଏ ଯେ ବିଭାବ, ଅନୁଭାବ, ସଂଚାରୀଭାବ ମଧ୍ୟରେ ରସର ଏକ ଅଖଣ୍ଡ ବ୍ୟାପ୍ତି

ବିଦ୍ୟମାନ। କାରଣ ରସ ଏକ ଅଖଣ୍ଡ ଅନୁଭୂତି । ଏହି ରସ ସୃଷ୍ଟି ପାଇଁ ବିଭାବ ଗୁଡ଼ିକ ଉତ୍ପାଦକର କାରଣ, ଅନୁଭାବ ଗୁଡ଼ିକ ପ୍ରକାଶକର କାରଣ ଏବଂ ବ୍ୟଭିଚାରୀ ଭାବ ଗୁଡ଼ିକ ହିଁ ବୃଦ୍ଧିର କାରଣ । କିନ୍ତୁ ଅନେକ ସ୍ଥଳରେ ପୂର୍ବାଚାର୍ଯ୍ୟମାନେ ଏହି କାର୍ଯ୍ୟ କାରଣ ସଂପର୍କ ବା ଅନୁପୂର୍ବକତା ଗ୍ରହଣ କରିନାହାନ୍ତି । କେତେକ କହନ୍ତି ଯେ ବିଭାବାଦିର ଏକତ୍ର ସମ୍ମେଳନରେ ରସ ନିଷ୍ପତ୍ତି । ଘଟିପାରେ।

**ବ୍ୟଭିଚାରୀ ଭାବର ସଂଖ୍ୟା :—** ନିର୍ବେଦ, ଆବେଗ, ଦୈନ୍ୟ, ଶ୍ରମ, ମଦ, ଜଡ଼ତା, ଔଗ୍ର୍ୟ, ମୋହ, ବିବୋଧ, ସ୍ୱପ୍ନ, ଅପସ୍ମାର, ଗର୍ବ, ମରଣ, ଆଳସ୍ୟ, ଅମର୍ଷ, ନିଦ୍ରା, ଅବହିତ୍ଥା, ଔତ୍ସୁକ୍ୟ, ଉନ୍ମାଦ, ଶଙ୍କା, ସ୍ମୃତି, ମତି, ବ୍ୟାଧି, ସନ୍ତ୍ରାସ, ଲଜ୍ଜା, ହର୍ଷ, ଅସୂୟା, ବିଷାଦ, ଧୃତି, ଚପଳତା, ଗ୍ଲାନି, ଚିନ୍ତା, ଓ ବିତର୍କ । ଏବଂ ବିଭାବାଦି ମଧ୍ୟରୁ ଗୋଟିଏ ବି ଏକା ବେଳକେ ଘଟି ନପାରେ । ସୁତରାଂ ବିଭାବ, ଅନୁଭାବ, ବ୍ୟଭିଚାରୀ ଭାବଙ୍କର ପୃଥକ୍ ରୂପେ ରସର ଅବସ୍ଥିତି ସମ୍ଭବ । ପୁଣି ସମଷ୍ଟିଗତ ଭାବେ ରସର ଉପଲବ୍ଧି ସମ୍ଭବ । ଲୌକିକ ଦୃଷ୍ଟିରୁ ବିଭାବ; ଅନୁଭାବାଦିର ପୂର୍ବାପର ସମ୍ବନ୍ଧ କଳ୍ପିତ ହୋଇଥିଲେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ସେହି ସମ୍ବନ୍ଧ ସତ୍ୟ ନୁହେଁ ।

ତେବେ ଭରତଙ୍କର ପ୍ରତିଷ୍ଠିତ ସୂତ୍ର ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗାଦ୍ରସ ନିଷ୍ପତ୍ତିଃ— ରେ ରସ ପରିପକ୍ୱତାର ଯେଉଁ ଆନୁକ୍ରମିକ ବିକାଶ ପରିଲକ୍ଷିତ ହୁଏ, ତାହା ଆଦୌ ଅସତ୍ୟ ନୁହେଁ । ରସ ସୂଚନା ସେଇଥିରୁହିଁ ଅନୁମେୟ । ତଥାପି ଭରତଙ୍କର ପରବର୍ତ୍ତୀ କାଳରେ ଭଟ୍ଟଲୋଲଟ, ଶ୍ରୀ ଶଙ୍କୁକ, ଭଟ୍ଟନାୟକ ଓ ଅଭିନବ ଗୁପ୍ତ ଆଦି ବିଭିନ୍ନ ଆଳଙ୍କାରିକ ରସ

ସିଦ୍ଧାନ୍ତ ଉପରେ ଆଚାର୍ଯ୍ୟମାନେ ମତ ପ୍ରଦାନ କରି ଭିନ୍ନ ବ୍ୟାଖ୍ୟା କରିଛନ୍ତି । ରସ ସୂତ୍ରର 'ସଂଯୋଗ' ଓ 'ନିଷ୍ପତ୍ତି' ଏହି ଦୁଇ ଶବ୍ଦ ବ୍ୟାପକ ଅର୍ଥ ବୋଧର ସୂଚନା ଦେଉଥିବାରୁ ସେମାନେ ସେହି ଦୁଇ ଶବ୍ଦ ଉପରେ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । ଫଳରେ ଉତ୍ପତ୍ତିବାଦ ( ଲୋଲଟ ) ଅନୁମିତିବାଦ ( ଶଙ୍କୁକ ) ଭୁକ୍ତିବାଦ (ଭଟ୍ଟନାୟକ) ଓ ଅଭିବ୍ୟକ୍ତିବାଦ (ଅଭିନବ ଗୁପ୍ତ) ଆଦି ବିଭିନ୍ନ ରସ ସିଦ୍ଧାନ୍ତର ସ୍ଫୁରଣ ହୋଇଛି । ସେ ଗୁଡ଼ିକ ଯେ ଭ୍ରମ ପ୍ରମାଦ ଶୂନ୍ୟ ତା' ନୁହେଁ, ବରଂ ସେସବୁ ଏଇରସ ନିଷ୍ପତ୍ତି ଉପରେ ଭିନ୍ନ ଭିନ୍ନ ବ୍ୟାଖ୍ୟା ମାତ୍ର ।

## ରସ ସ୍ୱରୂପର ବ୍ୟାପକତା :—

ରସ ତତ୍ତ୍ୱ ଅତି ବ୍ୟାପକ । ରସ ଏକ ମାନସିକ ଅବସ୍ଥା । ଅଖଣ୍ଡ ଓ ଅଦ୍ୱିତୀୟ ଏହାର ସ୍ଥିତି । ରସାବେଗ ଏକ ନିରବଚ୍ଛିନ୍ନ ପ୍ରବାହ । ବିଭାବାଦିର ସମ୍ମେଳନରେ ସମୋହାତ୍ମକ ପରିପକ୍ୱ ପରିଣତି ହିଁ ରସବୋଧର ବୈଶିଷ୍ଟ୍ୟ । ରସ ବାଚ୍ୟ ନୁହେଁ— ସେ ଏକ ପରମୋବ୍ୟଙ୍ଗ ।

କାବ୍ୟର ପ୍ରାଣାଧାର ରସ ହେଲେହେଁ ଏହା କୌଣସି ଶବ୍ଦ ଦ୍ୱାରା ପ୍ରତ୍ୟକ୍ଷଭାବେ ବ୍ୟକ୍ତ ହୋଇପାରେନା । ବରଂ ବ୍ୟଞ୍ଜନା ଦ୍ୱାରା ରସ ବୋଧ ହୋଇଥାଏ ।

ରସ ସ୍ୱୟଂ ପ୍ରକାଶିତ ଆନନ୍ଦର ସ୍ୱରୂପ । ରସ ପ୍ରକାଶ ପାଇଁ କାହାର ଉପରେ ନିର୍ଭର କରେ ନା କିମ୍ବା କାହାର ସାହାଯ୍ୟରେ ପ୍ରକାଶିତ ହୁଏନା । ଏହା ଯେହେତୁ ଆନନ୍ଦର ସ୍ୱରୂପ ତେଣୁ କାବ୍ୟ ପାଠପରେ ପାଠକର ଅନ୍ତରରେ ଅନନ୍ତ ଆନନ୍ଦର ଉଦ୍‌ବେଳନ ସୃଷ୍ଟି ହୋଇଥାଏ ।

ରସ ଉପଲବ୍ଧିରେ ପାଠକର ମନ ବିଷୟାନ୍ତର ଜଗତକୁ ପ୍ରେରିତ ହୁଏ  ଏକ  ବିଷୟାନ୍ତର ଏବଂ ନିର୍ବିଚିନ୍ତ ଜଗତରେ ଥାଇଁ ହିଁ । ପାଠକ ରସ ଅବବୋଧରେ ସକ୍ଷମ ହୁଏ, କିନ୍ତୁ ରସ ନିର୍ବିକଳ୍ପ ନୁହେଁ  ତାହା ସବିକଳ୍ପ ରସ ଜ୍ଞାନର  ସାମଗ୍ରୀ ନୁହେଁ, ସ୍ୱୟଂ ଜ୍ଞାନ । ଏହା ପ୍ରତ୍ୟକ୍ଷ ପ୍ରମାଣ ଗୋଚର ନୁହେଁ, ବରଂ ଅନୁଭୂତ ସିଦ୍ଧ । ରସ, ଜାତି, ଗୋତ୍ର ନିରପେକ୍ଷ ଏକ ଆସ୍ୱାଦ୍ୟ ବସ୍ତୁ ।

ରସ କାର୍ଯ୍ୟ ନୁହେଁ, କାରଣ । ଏହା ଅନିର୍ବଚନୀୟ ଓ ଅଲୌକିକ । ରସାସ୍ୱାଦନରେ ବିଭାବାଦିର ଅଖଣ୍ଡ ଚେତନାହିଁ ପରିପୁଷ୍ଟତା ଲାଭ କରିଥାଏ, ଏହି ରସ ବ୍ୟକ୍ତ ହୋଇଥାଏ । ବିଭାବାଦି ଏହାର ପ୍ରକାଶକ ବା ଅଭିବ୍ୟଞ୍ଜକ ଅଟନ୍ତି, ରସ ବ୍ୟକ୍ତ ହୁଏ ବୋଲି କାବ୍ୟ ପ୍ରକାଶରେ କୁହାଯାଇଅଛି, "ବ୍ୟକ୍ତଃ ସ ତୈର୍ବିଭାବାଦ୍ୟୈ ସ୍ଥାୟୀଭାବୋ ରସଃ ସ୍ମୃତଃ ।"

ମାନବ ଚେତନାର ନଅଟି ସ୍ଥାୟୀଭାବ— ରତି, ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଜୁଗୁପ୍ସା, ବିସ୍ମୟ ଓ ଶାନ୍ତ ଆଦି କ୍ରମେ ନବ ରସରେ ପରିଣତ ହୋଇଥାଏ ।

## ରସଭେଦ :—

ରସ ଏକ ନୁହେଁ, ଅନେକ । ମଣିଷ ଜୀବନ ସହିତ ଜଡ଼ିତ ସଂପୃକ୍ତ ଏବଂ ମଣିଷ ଚେତନାର ଅସୀମିତା ହେତୁ ରସ-ଉତ୍ପତ୍ତି ବହୁ ଭାବନାର କାରଣ । ଏଇ ବିଭିନ୍ନତା ଭିତରେ ଆନନ୍ଦ ସଂଚାରିତ ଏକତାହିଁ ଜଡ଼ିତ କଣ । ରସର ସଂଖ୍ୟା ଅତି ବ୍ୟାପକ । ବିଭିନ୍ନ ଆଳଙ୍କାରିକମାନଙ୍କ ଦୃଷ୍ଟିରେ ଏହା

ଅନେକତାରେ ବିଭୂଷିତ । ସଂଖ୍ୟାର ସ୍ଥିରତା ନାହିଁ । ଆଳଙ୍କାରିକ ମାନଙ୍କ ନିର୍ଦ୍ଧାରଣରୁ ରସ ସଂଖ୍ୟାର ଅଭିବୃଦ୍ଧି କାଳକ୍ରମେ କାବ୍ୟଶାସ୍ତ୍ରରେ ଦେଖାଦେଇଛି । ନିମ୍ନ ପ୍ରଦତ୍ତ ବିବରଣୀରୁ ସେ ଗୁଡ଼ିକର ପ୍ରମାଣ ବିବେଚିତ ହେବ ।

| ଆଳଙ୍କାରିକ | ରସ ନିର୍ଦ୍ଦେଶ | ସ୍ଥାୟୀ ବା ରସଭେଦ | ଅଳଙ୍କାର |
|---|---|---|---|
| ପ୍ରଥମ ଆଚାର୍ଯ୍ୟ ଭରତ | ଆଠୋଟି ରସର ଉଲ୍ଲେଖ କରିଥିଲେ ଶାନ୍ତରସ ଭରତ ନିର୍ଦ୍ଦେଶିତ ନୁହେଁ ଏହା ଟୀକାକାର ଉଦ୍ଭଟଙ୍କ ଦ୍ୱାରା ସଂଯୋଜିତ (ଅଷ୍ଟୌ ନାଟ୍ୟେ ରସାଃ ସ୍ମୃତାଃ- ଭରତ) | | ନାଟ୍ୟଶାସ୍ତ୍ର |

| ଆଲଙ୍କାରିକ | ରସ ନିର୍ଦ୍ଦେଶ | ସ୍ଥାୟୀଭାବ ବା ରସଭେଦ | ଅଲଙ୍କାର ଗ୍ରନ୍ଥ |
|---|---|---|---|
| ଦଣ୍ଡି | ସ୍ୱତନ୍ତ୍ର ଭାବରେ ରସ ନିର୍ଦ୍ଦେଶ ଦେଇ ନଥିଲେ। କେବଳ ବାଗ୍‌ରସ ଓ ବସ୍ତୁ ରସ ବୋଲି ଦୁଇଟି ରସର ଉଲ୍ଲେଖ । କରିଥିଲେ | ଶବ୍ଦାଳଙ୍କାର ଗୁଡ଼ିକ ବାଗ୍‌ରସ ପର୍ଯ୍ୟାୟର ଓ ଅର୍ଥାଳଙ୍କାର ଗୁଡ଼ିକ ବସ୍ତୁରସ ଶ୍ରେଣୀର । | କାବ୍ୟାଦର୍ଶ |
| ରୁଦ୍ରଟ | ନବରସ ସହ ପ୍ରେୟାନ୍ ରସକୁ ସଂଯୋଜିତ କଲେ। | ଯାହାର ସ୍ଥାୟୀ ଭାବ ସ୍ନେହ । | କାବ୍ୟାଳଙ୍କାର |
| ଭୋଜ | ପ୍ରେୟାନ୍ ବ୍ୟତୀତ ଉଦାତ୍ତ ଓ ଉଦ୍ଧତ ଦୁଇ ରସର ସଂଯୋଗ କଲେ । | ଉଦାତ୍ତର ସ୍ଥାୟୀ ଭାବ ମତି ଓ ଉଦ୍ଧତର ସ୍ଥାୟୀ ଭାବ ଗର୍ବ । ଧୀରୋଦାତ୍ତ ଓ ଧୀରୋଦ୍ଧତ ନାୟକ ଏମାନଙ୍କର ନାୟକ । | ସରସ୍ୱତୀ-କଣ୍ଠାଭରଣ |
| ପଣ୍ଡିତ ବିଶ୍ୱନାଥ | ବତ୍ସଳ ନାମକ ଏକ ନୂତନ ରସ ଯୋଗ କଲେ । | ଯାହାର ସ୍ଥାୟୀ ଭାବ ବାତ୍ସଲ୍ୟ । | ସାହିତ୍ୟ-ଦର୍ପଣ |

| ଆଲଙ୍କାରିକ | ରସ ନିର୍ଦ୍ଦେଶ | ସ୍ଥାୟୀଭାବ ବା ରସଭେଦ | ଅଲଙ୍କାର ଗ୍ରନ୍ଥ |
|---|---|---|---|
| ରୂପଗୋସ୍ୱାମୀ ଓ ମଧୁସୂଦନ ସରସ୍ୱତୀ | ଭକ୍ତି ରସର ନିର୍ଦ୍ଦେଶ ଦେଲେ । | | ଉଜ୍ଜ୍ୱଳ ନୀଳମଣି ଭଗବତ |
| ଅଭିନବଗୁପ୍ତ | ସ୍ନେହରସ ଓ ଲୌଲ୍ୟରସର ଉଲ୍ଲେଖ କଲେ । | ଯାହାର ସ୍ଥାୟୀଭାବ ଆର୍ଦ୍ରତା ଓ ଗନ୍ଧ । | ଲୋଚନ |
| ଉଦ୍ଭଟ | କୌଣସି ରସର ନାମୋଲ୍ଲେଖ ନ କରି ସେ କହିଲେ ଯେ ସବୁ ଭାବ,ରସ ପଦପକ୍ୱତା ଲାଭ କରିବାକୁ ସକ୍ଷମ । | | ଅଲଙ୍କାର ସାରସଂଗ୍ରହ |
| ସଙ୍ଗୀତ ସୁଧାକର କାର | ବ୍ରାହ୍ମ୍ୟ ସଂଯୋଗ ଓ ବିପ୍ରଲମ୍ଭ ରସର ଉଲ୍ଲେଖ କରିଥିଲେ । | ଯାହାର ସ୍ଥାୟୀଭାବ ଆନନ୍ଦ, ରତି ଓ ଅରତି | ସଂଗୀତ ସୁଧାକର |
| ପଣ୍ଡିତରାଜ ଜଗନ୍ନାଥ | ନବରସର ଉଲ୍ଲେଖ କରିଥିଲେ । | | ରସ ଗଙ୍ଗାଧର |

ରସ ସଂଖ୍ୟାର ଏତେ ବହୁତ୍ୱ ଓ ବ୍ୟାପକତା ଥିଲେ ସୁଦ୍ଧା ଆଳଙ୍କାରିକ ସିଦ୍ଧାନ୍ତରେ ମୁଖ୍ୟତଃ ଶୃଙ୍ଗାର, କରୁଣ, ହାସ୍ୟ ଆଦି ନଅଟି ରସକୁ ସ୍ୱୀକୃତ ମିଳନ୍ତି । ସେ ଗୁଡ଼ିକଙ୍କ ସଂକ୍ଷିପ୍ତ ପରିଚୟ ନିମ୍ନରେ ପ୍ରଦତ୍ତ ହେଲା ।

## ଶୃଙ୍ଗାର ରସ

ମଣିଷର ଆଦିମ ଯୌନ ପ୍ରବୃତ୍ତିରୁ ଶୃଙ୍ଗାରିକତାର ଜନ୍ମ । ଶୃଙ୍ଗାରିକ ମନୋଭାବର ପୋଷକ ହୋଇଥିବାରୁ ଏହାକୁ ଶୃଙ୍ଗାର ବା ଆଦିରସ କୁହାଯାଏ । ଯୌନ ଅବସ୍ଥାରେ ଶୃଙ୍ଗାରିକତା ଅଧିକ ପ୍ରକଟିତ ହୁଏ । ରତି ଏହାର ସ୍ଥାୟୀଭାବ । କାମିନୀ ଆଦି ଏହାର ଆଲମ୍ବନ ବିଭାବ; ଚନ୍ଦ୍ର, ଜ୍ୟୋତ୍ସ୍ନା, ବସନ୍ତ, କୋକିଳ, ଉପବନ ଚନ୍ଦନ ଆଦି ଉଦ୍ଦୀପନ ବିଭାବ । ଆଲିଙ୍ଗନ, ଚୁମ୍ବନ, ଆଳାପ ଓ ଭ୍ରୂକଟାକ୍ଷ, ଶିହରଣ, ଦୃଷ୍ଟି ବିନିମୟ ଆଦି ଏହାର ଅନୁଭାବ । ଉତ୍କଣ୍ଠା, ଚପଳ୍ୟ, ଲଜ୍ଜା, ହର୍ଷ, ଚିନ୍ତା ଜଡ଼ତା ଆଦି ଏହାର ସଂଚାରୀ ଭାବ ।

ଶୃଙ୍ଗାର ରସ ସଂଭୋଗ ଓ ବିପ୍ରଲମ୍ଭ ଭେଦରେ ଦୁଇ ପ୍ରକାର । ନାୟକ, ନାୟିକାଙ୍କ ମିଳନରେ ସଂଭୋଗ ଶୃଙ୍ଗାର ଉପଲବ୍ଧ ହୁଏ । କିନ୍ତୁ ଦୁହେଁଙ୍କଠାରେ ତୀବ୍ର ଆକାଂକ୍ଷା ଓ ପ୍ରତୀକ୍ଷା ଥିଲେ ସୁଦ୍ଧା ପ୍ରିୟ ଆଗମନ ହୁଏ ନାହିଁ କିମ୍ବା କୌଣସି କାରଣରୁ ପ୍ରିୟଙ୍କର ଅସହ୍ୟ ବିରହ ଅନୁଭୂତ ହେଲେ ବିପ୍ରଲମ୍ଭ ଶୃଙ୍ଗାର ହୋଇଥାଏ । ବିପ୍ରଲମ୍ଭ ଶୃଙ୍ଗାର ଚାରିପ୍ରକାର । ପୂର୍ବରାଗ, ମାନ, ପ୍ରବାସ ଓ କରୁଣ । ପୂର୍ବରାଗ ତିନିପ୍ରକାର— ନୀଳି, କୁସୁମ୍ଭ ଓ ମଞ୍ଜିଷ୍ଠା । ବିପ୍ରଲମ୍ଭା ନାୟିକା ପୂର୍ବରାଗରେ କାମର ଦଶ ଦଶା

ଭୋଗକରେ । ସେ ଗୁଡ଼ିକ ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍ବେଗ, ସଂପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମୃତ୍ୟୁ । ପ୍ରବାସ ତିନିପ୍ରକାର— ଭୂତ, ଭବିଷ୍ୟ ଓ ବର୍ତ୍ତମାନ । ନାୟିକା ଭୋଗ୍ୟ ପ୍ରବାସିକ ଦଶଦଶା ହେଉଛି ଅସୁନ୍ଦରତା, ତାପ ପାଣ୍ଡୁରତା, କ୍ଷୀଣତା, ଅରୁଚି, ଅଧୃତି, ଅନାଲମ୍ବନ, ଉନ୍ମାଦ ମୂର୍ଚ୍ଛା ଓ ମୃତ୍ୟୁ ।

ଶୃଙ୍ଗାର ରସ ପ୍ରଧାନ ରସ । ଏଥିରୁ କରୁଣ, ହାସ୍ୟ ଆଦି ରସର ଉତ୍ପତ୍ତି ବୋଲି ଆଳଙ୍କାରିକ ମାନଙ୍କର ମତ । ଶୃଙ୍ଗାରିକତା ମଣିଷର ସ୍ୱଭାବଜ । ତେଣୁ ଆବାଳ ବୃଦ୍ଧ ବନିତା ଭେଦରେ ଏହା ଏକ ବ୍ୟାପକ ପ୍ରବୃତ୍ତି । ଏହାର ପ୍ରକାଶରେ କାବ୍ୟର ରସ ମହନୀୟତା ପ୍ରତିପନ୍ନ ହୁଏ, । ରୁଦ୍ରଟ କହନ୍ତି— ଶୃଙ୍ଗାର ରସ ବିନା "ଭବତି ବିରସ ନେହାନେନ ପ୍ରାନଂଝ କାବ୍ୟଂ" । ଶୃଙ୍ଗାରର ପ୍ରାଧାନ୍ୟ ହେତୁ ବୋଧହୁଏ ଆଳଙ୍କାରିକମାନେ କହୁଥିଲେ— "ଶୃଙ୍ଗାରଚେତ୍ କବିଃ" । ପ୍ରାଚୀନ ଓ ନବୀନ କାବ୍ୟ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ପ୍ରଚୁର । [illegible] ୩୪ ଛାନ୍ଦରେ ଓ ବିଦଗ୍ଧ ଚିନ୍ତାମଣିର 'ବନ୍ଧୁ ଛାନ୍ଦରେ ସମ୍ଭୋଗ ବିପ୍ରଲମ୍ଭ ଶୃଙ୍ଗାର ରସର ପରିଚୟ ମିଳିଥାଏ :—

ଦ୍ରୁଶାରଙ୍ଗ ଦନ୍ତ ପଲଙ୍କେ    ଶାରଙ୍ଗ ଦେବା ନିଶଙ୍କେ
ଶାରଙ୍ଗମୁଖୀ ସାରଙ୍ଗ କେଳି ପୁଟଲେନେ,
ଷାରଙ୍ଗ ନାଳ ବାନ୍ଧିବେ    କାନ୍ତା ଭିଡ଼ି ସାରଙ୍ଗରେ
ସାରଙ୍ଗ ଉପରୁ ଶୀଘ୍ର ଟେକି ଚେ ନେଲେ
ସାରି ପ୍ରେମେ ସାରଙ୍ଗ ରଣ
ସହଜେ ଉଛୁଲେ ଶାନ୍ତ ସୁଟେଳ ପ୍ରାଣ ।

( କମଳାକାନ୍ତ ଚଉତିଶା )

# ହାସ୍ୟରସ

ଅସଂଗତ ବା ବିକୃତ ହାସ୍ୟରସର ଜନକ । 'ରୂପସତ୍ତ୍ୱ ତୁମାସ୍ତନର ଅସଂଗତି, ପ୍ରକୃତ ସହ ବିକୃତି ବା କଳ୍ପନାର ଅସଂଗତି, କାର୍ଯ୍ୟସହ କାରଣର ଅସଂଗତି ହିଁ ହାସ୍ୟରସ ଉତ୍ପତ୍ତିର ହେତୁ, । 'ହାସ'-- ହାସ୍ୟ ରସର ସ୍ଥାୟୀଭାବ । ଆନନ୍ଦ ଉତ୍ପାଦନ ହାସ୍ୟରସର ଉଦ୍ଦେଶ୍ୟ । ବ୍ୟକ୍ତି, ଚରିତ, ରୂପ ଓ ପ୍ରବୃତ୍ତିର ବିକୃତ ଏହାର ଆଲମ୍ବନ ବିଭାବ । ହାସ୍ୟବର୍ଦ୍ଧକ ଚେଷ୍ଟା ଉଦ୍ଦୀପନ ବିଭାବ । ଭ୍ରୂ ଓ କପାଳ, ନାସିକା, ଓଷ୍ଠ ଆଦିର କମ୍ପନ ଏହାର ଅନୁଭାବ । ରୋମାଞ୍ଚ, ସ୍ୱେଦ, ଅସୂୟା, ହାର୍ଷଇତା ଆଦି ଏହାର ସଞ୍ଚାରୀଭାବ । ହାସ୍ୟ ରସ ଶ୍ୱେତବର୍ଣ୍ଣ । ଏହା ଛ' ପ୍ରକାର—

ସ୍ମିତ ବା ହସିତ— ଉତ୍ତମ ପୁରୁଷର ହାସ୍ୟ
ବିହସିତ ବା ଅବହସିତ— ମଧ୍ୟମ ପୁରୁଷର ହାସ୍ୟ
ଅପହସିତ ବା ଅତିହସିତ— ନୀଚ ପୁରୁଷର ହାସ୍ୟ ।

'ଚତୁର ବିନୋଦ' ଓ 'କଳସା ଚଉତିଶା'ରେ ଏହି ହାସ୍ୟର ଦୃଷ୍ଟାନ୍ତ ବିରଳ ନୁହେଁ ।

ଉଦାହରଣ :— ଅର୍ଦ୍ଧବୟ ଉଲଙ୍ଗିନୀ ମୁରୁକ ହାସିନୀ
ବସ୍ତ୍ରଶୂନ୍ୟା ଶିକ୍ତହସ୍ତା ତୁରଙ୍ଗ ଗାମିନୀ
ମାର୍ଜ୍ଜାରନୟନା ତାମ୍ରକେଶା ଅଣ୍ଡାଭୃତା
ସ୍ୱାଧୀନଭର୍ତ୍ତୃକା ପାଞ୍ଚଜଣ ଆଗେ ଛିଡ଼ା
ପର ପୁରୁଷକୁ ଧରି ନର୍ତ୍ତକୀ ସୁନ୍ଦରୀ
ଆହା ଆହା ଅପରୂପ ସ୍ୱର୍ଗ ବିଦ୍ୟାଧରୀ ।

(ଫକୀର ମୋହନ)

# କରୁଣ ରସ

ଶୋକାବେଗର ଆତିଶଯ୍ୟରେ କରୁଣ ରସର ସ୍ଫୁରଣ ଘଟିଥାଏ । ପ୍ରିୟଜନର ବିରହ, ଆତ୍ମୀୟର ମୃତ୍ୟୁ, ଅପ୍ରାପ୍ତିର ଅନୁଶୋଚନା, ବ୍ୟାଧିର ଯନ୍ତ୍ରଣା ଇତ୍ୟାଦିରେ ଶୋକଭାବ ପରିପୁଷ୍ଟ ହେଲେ କରୁଣ ରସର ଉଦ୍ରେକ ହୋଇଥାଏ । ଶୋକ, କରୁଣ ରସର ସ୍ଥାୟୀଭାବ । ବନ୍ଧୁ, ବ୍ୟକ୍ତି, ବସ୍ତୁ ଯେଉଁମାନେ କି ଶୋକ ତାପିତ ସେମାନେ ଏହାର ଆଲମ୍ବନ ବିଭାବ । ବିୟୋଗ ହେତୁ ବ୍ୟକ୍ତିର ସ୍ମରଣ କିମ୍ବା ତା' ଦର୍ଶନ ଆଦି ଏହାର ଉଦ୍ଦୀପନ ବିଭାବ କ୍ରନ୍ଦନ, କପାଳାଘାତ, ବିଧାତାଙ୍କ ପ୍ରତି ଅଭିଯୋଗୋକ୍ତି ଆଦି ଏହାର ଅନୁଭାବ । ବ୍ୟାଧି, ଗ୍ଲାନି, ବିଷାଦ, ଚିନ୍ତା, ମୋହ, ସ୍ମୃତି, ଦୈନ୍ୟ ଆଦି ଏହାର ସଂଗୃହଭାବ ।

ଶୋକରୁ କରୁଣ ରସର ଉତ୍ପତ୍ତି ହେଲେ ବି ଏହା ଆନନ୍ଦ ସଂପୃକ୍ତ । କାରୁଣ୍ୟରେ ହିଁ ଆନନ୍ଦର କାରଣ ନିହିତ, ଯେପରି ଅନ୍ଧକାରରେ ହିଁ ଆଲୋକର ଅବକାଶ ସଂଭାବିତ । ଏହି ଶୋକରୁ ହିଁ ସାହିତ୍ୟର ଉତ୍ପତ୍ତି —

"ମା ନିଷାଦ ! ପ୍ରତିଷ୍ଠାଂତ୍ୱ ମଗମଃ ଶାଶ୍ୱତୀଃ ସମାଃ
ଯତ୍କ୍ରୌଞ୍ଚ ମିଥୁନାଦେକ ମାବଧୀଃ କାମମୋହିତଂ ।"

ବ୍ୟାଧ ଶରାହତ କ୍ରୌଞ୍ଚ ବିରହ ବିଧୁର କ୍ରୌଞ୍ଚ ବଧୂର ବେଦନା ସିକ୍ତ ଏହି ପଂକ୍ତି କରୁଣ ରସାଶ୍ରିତ ।

ଉଦାହରଣ :— ବାଲୁରେ ଲୁଚିଲେ କିମ୍ପା ଶୋଇଛୁ ଏପରି ?
ଏ କି ରୁଷା ତୋର ? ତୋର ଦୁଃଖିନୀ ଜନନୀ
ଡାକଇ ଅଇରେ ତୋତେ; ଉଠୁନାହୁଁ କାହିଁ ?
କାହିଁ ତୋଷୁନାହୁଁ କଣ୍ଠ ତୋର ସୁଧା ଗିରେ ?

ତୋମା ପାଇଁ ବନ୍ଧବୁ ଅନ୍ନ, ଏଥିଲାଗି ପଣ୍ଣ
ମୀବାର ପାଟରୁ ଆଣି ଥୋଇଲ୍ଲ ପ୍ରଦୋଷେ
ଉଦୁଖଳେ, ଏହ ପ୍ରାଚେ କୁଟିବୁ ତା ବୋଲ ?
(ଦଶରଥ ବିୟୋଗ)

## ରୌଦ୍ର ରସ

ଶତ୍ରୁ ପକ୍ଷରୁ ଅପମାନ ଓ ଅପବାଦ ଏବଂ ବିରୋଧୀ ବ୍ୟକ୍ତିଠାରୁ ବିଦ୍ୱେଷୀ ମନୋଭାବ କିମ୍ବା ନିନ୍ଦା ରଚନାର ଆଭାସ ପାଇ ସାରିଲା ପରେ ମନରେ ଯେଉଁ ପ୍ରତିଶୋଧାତ୍ମକ ଭାବ ଜାଗ୍ରତ ହୁଏ, ତାର ପରିଣତ ସ୍ୱରୂପ ଜନ୍ମ ନିଏ ରୌଦ୍ର ରସ । କ୍ରୋଧ ଆସିଲେ ପ୍ରତିଶୋଧ ବହ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠେ— ଏବଂ କ୍ରୋଧ ସ୍ଥାୟୀ ଭାବରୁ ରୌଦ୍ର ରସର ଉତ୍ପତ୍ତି ହୋଇଥାଏ । ଶତ୍ରୁ ପକ୍ଷ କିମ୍ବା ବିଦ୍ୱେଷୀ ମନୋଭାବାପନ୍ନ ବିରୋଧୀ ବ୍ୟକ୍ତି ଏହାର ଆଲମ୍ବନ ବିଭାବ । ନୟନର ରକ୍ତିମା, ମୁଖମଣ୍ଡଳର ଅଗ୍ନିରାଗ, ଗର୍ଜ୍ଜନ, ଆସ୍ଫାଳନ, ଅସ୍ତ୍ରଶସ୍ତ୍ର ସଂଚାଳନ ଇତ୍ୟାଦି ଏହାର ଉଦ୍ଦୀପନ ବିଭାବ, ଭ୍ରୁକୁଟିଭଙ୍ଗୀ, ବାହୁଆସ୍ଫୋଟ, ଉଦ୍ବେଗ ପ୍ରକାଶ ଇତ୍ୟାଦି ଏହାର ଅନୁଭବ ଏବଂ ଆବେଗ ଓ ଉଗ୍ରତା ଏହାର ସଂଚାରୀ ଭାବ । କ୍ରୋଧ ଯେତେହେତୁ ଏହାର ସ୍ଥାୟୀଭାବ ଏହା ବୀର ରସଠାରୁ ପୃଥକ୍ । କାରଣ ବୀରରସର ସ୍ଥାୟୀଭାବ ଉତ୍ସାହ ।

ଉଦାହରଣ :— ଭଗ୍ନଟି ଗୃହିଁଲ ଖ୍ରିପ ବିରାଟ ମୂରତି
ତଗଟି ଗୃହିଲ ରୋଷେ ଅନ୍ତରୀକ୍ଷ ପ୍ରତି
ଗର୍ଜ୍ଜି କହିଲା, ଆହେ ସୁରଗଣ !
ଅହେ ଭୁବନାଥ ଇନ୍ଦ୍ର ଦେଖ ବିଦାରଣ

ପବନ ତପନ ସମ ଦନ୍ତ୍ରା ଆଦି କରି
ମିଳି ଏ ସମରେ ଆଜି କରେ ଅସ୍ତ୍ର ଧରି
ଆସ କେ ରଖିବ ରଣ ଭୀରବ ପାମର
ଆସ ଆସ ବେଗକରି ବିଳମ୍ବ ନ କର ।
( ବେଣୀ ସଂହାର )

## ବୀର ରସ

ଉତ୍ସାହ ଏହାର ସ୍ଥାୟୀଭାବ । ଯାହାକୁ ଦେଖିଲେ କିମ୍ବା ପଢ଼ିଲେ ମନରେ ସ୍ୱତଃ ଉତ୍ସାହ ଓ ଉଦ୍ଦୀପନାର ଜାଗରଣ ହୁଏ, କିମ୍ବା ଦୁର୍ମଦ ଶକ୍ତି ସଂଚାର ହୁଏ ବାସ୍ତବିକ୍ ତାହା ବୀର ରସର ସୂଚନା ଦେଇଥାଏ । ଶତ୍ରୁ କିମ୍ବା ଉତ୍ସାହ ଉଦ୍ଦୀପକ ଦୃଶ୍ୟ ଏହାର ଆଲମ୍ବନ ବିଭାବ । ବ୍ୟକ୍ତିର ପରାକ୍ରମ ଓ ବିଜୟ କିମ୍ବା ଅନୁଷ୍ଠାନ ଏହାର ଉଦ୍ଦୀପନ ବିଭାବ । ରୋମାଞ୍ଚ, ଉଦ୍‌ବୋଧନ ଆଦି ଅନୁଭାବ ଏବଂ ଧୈର୍ଯ୍ୟ, ଆବେଗ, ଗର୍ବ, ଅସୂୟା, ମତି, ଧୃତି ଓ ସ୍ମୃତି ଏହାର ସଂଚାରୀ ଭାବ । ବୀର ଭାବ ଚତୁର୍ବିଧ — ଦାନବୀର, ଧର୍ମବୀର, ଯୁଦ୍ଧବୀର, ଦୟାବୀର, କର୍ମବୀର ।

ଉ:ହ:— ବାଜିଲା ବିବିଧ ବାଦ୍ୟ ମାତି ବୀରରସେ
ଆୟୁଧ ଆସ୍ଫାଳି ବୀରେ ଧାଇଁଲେ ସାହସେ
ବୀରମଦେ ବେଢ଼ି ବୀର କାର୍ମୁକ ଟଙ୍କାରେ
କି ଅବା ଆସ୍ଫାଳି ଅସି ଭୀଷଣ ହୁଙ୍କାରେ
ଦୋଳେ ଝକ୍ ଝକ୍ ପୃଷ୍ଠେ ଫଳକ ବର୍ତ୍ତୁଳ
କି ଅବା ଜଳଦ ଶୂନ୍ୟେ ଭୂଷଇ ବିଶୂଳ

ଭାଗୀ ପ୍ରତିପକ୍ଷ ବକ୍ଷ ଲକ୍ଷି କେହୁ ବୀର
ଧାଆଁନ୍ତେ କବଚେ ବାଣ ବାଜଇ ତୂଣୀର ।
ଗମ୍ଭୀର ସମର ବାଦ୍ୟ, ଅସ୍ତ୍ର ଝନ୍‌ଝନ
ସିଂହନାଦ, ଶଙ୍ଖନାଦ ବ୍ୟାପଇ ଅବନୀ ।
(ବେଣୀ ସଂହାର)

## ଭୟାନକ ରସ

କୌଣସି ବ୍ୟକ୍ତି ବା ବସ୍ତୁର ବର୍ଣ୍ଣନରେ ଯଦି ଭୟ ଜାତ ହୋଇ ବିଭାବାଦିର ସମ୍ମେଳନରେ ରସ ପରିପୁଷ୍ଟି ଲଭକରେ ତେବେ ତାହା ଭୟାନକ ରସରେ ପରିଣତ ହୁଏ । ଭୟ ଏହାର ସ୍ଥାୟୀଭାବ । ଶ୍ମଶାନ, ଭୂତ, ପ୍ରେତ, ସର୍ପ, ବ୍ୟାଘ୍ର, ଆଲମ୍ବନ ବିଭାବ, ଶତ୍ରୁର ଭୟାତ୍ମକ କାର୍ଯ୍ୟ, ଭୟ ସୂଚକ ଧ୍ୱନି ଏହାର ଉଦ୍ଦୀପନ ବିଭାବ, ସ୍ୱେଦ, ରୋମାଞ୍ଚ, ପଳାୟନ, ବୈବର୍ଣ୍ଣ ରୋଦନ, ଅନୁଭାବ ଏବଂ ଶଙ୍କା, ଗ୍ଲାନି, ମୂର୍ଚ୍ଛା ତ୍ରାସ ଓ ଜୁଗୁପ୍ସା ଏହାର ସଞ୍ଚାରୀ ଭାବ ।

ଉଦାହରଣ :— ଶୋଣିତ ପାଟଳ ଭୁଜ ଭୀମ ଉପାଡ଼ଣ
ଗଗନକୁ ପିଙ୍ଗିଦେଲ ବେଗେ ଦୁଲଇଣ
ବରଷେ ରୁଧିର ଧାର ଆକାଶ ବିସ୍ତାର
ଅନ୍ତରୀକ୍ଷେ ଶ୍ୟେନପକ୍ଷୀ ଭୁଜ ନେଲ୍ଲ ମାରି
କୃଷ୍ଣା କୃଷ୍ଣ କେଶେ ରକ୍ତ ବର୍ଷଇ ପ୍ରଚୁର
ବିଦାରିଲ ବୃକୋଦର ଦୁଃଶାସନ ଉର ।
ଦନ୍ତ କଡମଡ଼ ସିଂହ ଯଦ୍ଦେ ଆଚମ୍ବିତ
ବୃଷ ସ୍କନ୍ଧେ ଦନ୍ତ ଯେସନ୍ତେ ପିଅଇ ଶୋଣିତ ।
(ବେଣୀ ସଂହାର)

## ବୀଭତ୍ସ ରସ

ଜୁଗୁପ୍ସା ସ୍ଥାୟୀଭାବ ଥାଇ ଘୃଣିତ ବସ୍ତୁକୁ ଦେଖି କିମ୍ବା ଶ୍ରବଣ କରି ମନରେ ବିକାର ଜନ୍ମିଲେ ବୀଭତ୍ସ ରସର ସୃଷ୍ଟି ହୁଏ । ଶବ, ଶ୍ମଶାନ, ସଢ଼ାମାଂସ, ରୁଧିର ଆଦି ଏହାର ଆଲମ୍ବନ, ଶାଗୁଣାଙ୍କ ମାଂସ ଭକ୍ଷଣ, ମାଂସ ଅନ୍ୱେଷଣ ଆଦି ଉଦ୍ଦୀପନ ବିଭାବ । ନାସିକା କୁଞ୍ଚନ, ମୁଖ ବିକୃତ ଏହାର ଅନୁଭାବ; ଆବେଗ ମୋହ, ବ୍ୟାଧି, ଜଡ଼ତା, ଗ୍ଲାନି, ଦୈନ୍ୟ ନିର୍ବେଦ ଏହାର ସଂଚାରୀ ଭାବ । ସାହିତ୍ୟରେ ବୀଭତ୍ସ ରସର ଦୃଷ୍ଟାନ୍ତ ବିରଳ ନୁହେଁ ।

ଉ:ହ:— 'ଫେଏ' ଫେଏ' ଶବଦେଇ ଭେଳୁ ଉଲ୍‌କାମୁଖୀ
ଫୁଙ୍କାରେ ବିକାଶେ ମୁଖୁ ଦୀପ୍ତ ଉଲ୍‌କା ଶିଖା
ଭୈରବୀ ମଶାଣଚଣ୍ଡୀ ଅଧିଷ୍ଠାତ୍ରୀ ଏଥି
କପାଳ ମାଳିନୀ ଦେବୀ କପାଳ କୁଣ୍ଡଳା
ଭୀମା, ପ୍ରେତାଶିନୀ, ପ୍ରେତ-ସମାଜ ଗୃହିଣୀ,
ରକ୍ତ, ଅସ୍ଥି ପାଇ ଏବେ ନିବିଡ଼ ତପସେ
ଆବୃତ ମଶାଣିଭୂମି, ଦିଶୁନାହିଁ ସୀମା । (ଶ୍ମଶାନ ଦୃଶ୍ୟ)

## ଅଦ୍ଭୁତ ରସ

ଅଦ୍ଭୁତ ବା ଅପୂର୍ବ ଦୃଶ୍ୟ ଦର୍ଶନ କିମ୍ବା ବର୍ଣ୍ଣନା ଶ୍ରବଣରେ ବିସ୍ମୟ ଭାବ ଜାଗ୍ରତ ହୋଇ ଅଦ୍ଭୁତ ରସରେ ପରିଣତ ହୁଏ । ଅଲୌକିକ ପ୍ରକୃତି, ବିସ୍ମୟାବସ୍ଥା ଏହାର ଆଲମ୍ବନ ବିଭାବ । ଇନ୍ଦ୍ରଜାଲ, ମାୟା ଏହାର ଉଦ୍ଦୀପନ । ସ୍ତମ୍ଭ, ସ୍ୱେଦ, ବିସ୍ମୟ, ଅନୁଭାବ ଏବଂ ଆବେଗ, ଶଙ୍କା, ଚିନ୍ତା, ବିତର୍କ,

ହର୍ଷ, ଚପଳତା, ଔତ୍ସୁକ୍ୟ ଏହାର ସଂଚାରୀ ଭାବ । ଅଶ୍ରୁପାତ ହେଉଛି ଏହାର ସ୍ଥାୟୀଭାବ ।

ଉଦାହରଣ:— ସହ୍ୟାଦ୍ରି ଶିଖରେ ବସି, ଦିବ୍ୟାଲୋକ ଯୋଗେ
ଦେଖିଲେ ପାଣ୍ଡବ ଗଣ ଅନଳ ପ୍ରସାଦେ
ବସ୍ମୟେ ଅଦ୍ଭୁତ ଦୃଶ୍ୟ, ଦଶିଲ୍ଲ ଆକାଶେ
ତାରକା ଗୁମ୍ଫିତ ଶୁଭ୍ର ଚନ୍ଦ୍ରାତପ ତଳେ
ସ୍ୱର୍ଣ୍ଣ ମେଘେ ଦେବସଭା ବରାଜନ୍ତି ଯହିଁ
ଦେବଗଣ, ଚନ୍ଦ୍ରାମଗ୍ନ ସର୍ବେ ଏକ ମନେ,
ଚନ୍ଦ୍ରାକାରେ ବେଢ଼ିଅଛି ସର୍ବ ଦେବ ଦେହେ
ସୁନ୍ଦର ପ୍ରଭା ମଣ୍ଡଳ, ବନ୍ଧୁଙ୍କ ଯେସନ
ବେଢ଼ଇ ବବିଧ ବର୍ଣ୍ଣେ ଉଜ୍ଜ୍ୱଳ ପରିଧି
ନିଶାକାଳେ ବରଷାର ଆଗମ ସୂଚକ
ଏକ ଏକ କରଦେବ ସୁବର୍ଣ୍ଣ ପରିଧି ।

(ମହାଯାତ୍ରା)

## ଶାନ୍ତରସ

ଶମ ଓ ବୈରାଗ୍ୟ ଶାନ୍ତ ରସର ସ୍ଥାୟୀଭାବ, ପବିତ୍ର ଓ ଶାନ୍ତ ବାତାବରଣରେ ସର୍ବ୍ୟାର ଉପଲବ୍ଧି । ସଂସାରର ଅନିତ୍ୟତା ସମ୍ପର୍କରେ ଜ୍ଞାନର ଉଦୟ, ପରମେଶ୍ୱରଙ୍କ ପ୍ରତି ତତ୍ତ୍ୱାନୁସନ୍ଧାନ ଏହାର ଆଲମ୍ବନ ବିଭାବ । ତୀର୍ଥ ଭ୍ରମଣ, ସତ୍ ଚିନ୍ତନ, ପ୍ରକୃତି ବର୍ଣ୍ଣନା, ସତ୍ସଙ୍ଗ ଅଶ୍ରୁ ଏହାର ଉଦ୍ଦୀପନ ବିଭାବ । ଦୁଃଖାଶ୍ରିତ ସଂସାର ପ୍ରତି ଘୃଣାବତା, ତାପସ ଜୀବନ ଗ୍ରହଣ ପାଇଁ ଉଦ୍‌ଯୋଗ

ଏହାର ଅନୁଭବ । ଅସୂୟା, ନିର୍ବେଦ, ଜଡ଼ତା, ଧୃତି ଏହାର ସଂଗୃସ୍ତ ଭାବ । ନିବୃତ୍ତିବାଦୀମାନେ ଏହାର ପୃଷ୍ଟପୋଷକ, କିନ୍ତୁ ପ୍ରବୃତ୍ତିବାଦୀମାନେ ଶୃଙ୍ଗାରକ ।

ଉ:ଦ:— ଗୁଳ୍ଲେ ହରଣ ହରିଣୀ
ତାଙ୍କ ସଙ୍ଗେ ଶାବକ
ବୃକ୍ଷ ବୃକ୍ଷେ ତେଜିଁ ଚଳିଲେ
ପିକ, ମୟୂର, ବକ ।
ସମୀର ସାଗରେ ଗୁଡ଼ିଲେ
ନିଜ ଶରୀର ପୋତ
ନୟନ ରଞ୍ଜନ ଖଞ୍ଜନ
ଶୁକ, ସାରୀ, କପୋତ ।
(ତପସ୍ୱିନୀ)

କାବ୍ୟଶାସ୍ତ୍ର ସ୍ୱୀକୃତ ୯ଟି ନବରସ ଭିନ୍ନ କେତେକ ଅଳଙ୍କାରିକ ଭକ୍ତି ଓ ବାତ୍ସଲ୍ୟ ରସର ସୂଚନା ଦେଇଥାନ୍ତି । ପରମେଶ୍ୱରଙ୍କ ପ୍ରତି ଭକ୍ତି ଭାବରୁ ଭକ୍ତିରସ ଏବଂ ପିତାମାତାଙ୍କର ସନ୍ତାନ ସନ୍ତତି ପ୍ରତି ସ୍ନେହରୁ ବାତ୍ସଲ୍ୟ ରସ ଉତ୍ପତ୍ତି ହୋଇଥାଏ । ଏ ସବୁ ରସର ଉଦାହରଣ ଓଡ଼ିଆ ସାହିତ୍ୟରେ ପ୍ରଚୁର ।

କୃପାସିନ୍ଧୁ ବଦନ କରି ଅବଲୋକନ
ଯେଉଁ କରମହୀନ ଜନ
କାକୁସ୍ଥଚିତ୍ତ ହୋଇ କରଯୋଡ଼ି ଜଣାଇ
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ, ମହାପ୍ରଭୁ
କୃପାସାଗର ମନ ହୋଇ, କରମ ହୀନ ଜନ ତହିଁ
କରୁଣା କଲନାହିଁ କିମା ହେ ଭାବଗ୍ରାହୀ
କହ ମୁଁ କରିବ ମଣଇ ହେ ।

ବାତ୍ସଲ୍ୟ ରସ :— ଦିନଯାଇ କଣ ନ ଥିବୁ
ପଗ କରୁଛୁ ଅହାର
ପୁଅ କହୁଥିବ ଗରବେ
ନଳ ଚାନ୍ଦ ପ୍ରହାର
ଖାଅ ମା ! ଖାଅ ମା ! ମୋ ଘରେ
ଚୋର କି ଅଛୁ ଲାଜ
ଗୃହେଁ ବନ୍ଧୁଛନ୍ତି ଚୋରେ ତୋ
ଏହୁ ସର୍ଗୀ ସମାଜ ।
(ତପସ୍ୱିନୀ)

## ଉପସଂହାର :—

କାବ୍ୟରେ ରସର ସ୍ଥିତି ଆଦୌ ନଗଣ୍ୟ ନୁହେଁ । କାବ୍ୟର ଉତ୍କର୍ଷ ରସ ପ୍ରକାଶର ଔଚିତ୍ୟ ଉପରେ ନିର୍ଭର କରେ । ରସ, କାବ୍ୟ ସୌନ୍ଦର୍ଯ୍ୟର ପରିପୋଷକ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରେ ଏହି ରସ ହୁଏତ ଭିନ୍ନ ଭିନ୍ନ ଅର୍ଥ ଭଙ୍ଗୀରେ କାବ୍ୟର ପ୍ରାଣରୂପେ ପ୍ରତିଷ୍ଠିତ । ପାଶ୍ଚାତ୍ୟ ସାହିତ୍ୟର କାବ୍ୟ ସୌନ୍ଦର୍ଯ୍ୟ ଓ ପ୍ରାଚ୍ୟ ସାହିତ୍ୟିକ ସଂବିଧାନର ରସ ପ୍ରକାଶ ଉଭୟ ଏକ ଆସନର ଅଧିକାରୀ ।

ଅନୁଚିତ ଓ ଅସଂଗତ ବର୍ଣ୍ଣନା ରସ ସୃଷ୍ଟିର ବାଧକ । ଯେଉଁଠି ବର୍ଣ୍ଣନା କ୍ରମରେ ଔଚିତ୍ୟ ହୀନତା ଦେଖାଦିଏ ସେଠି ରସ ସୃଷ୍ଟି ନ ହୋଇ ରସାଭାସ ହିଁ ସୃଷ୍ଟି ହୋଇଥାଏ ।

ଶବ୍ଦାଡମ୍ବରର ଗାମ୍ଭୀର୍ଯ୍ୟ କେବଳ କାବ୍ୟକୁ ଗୌରବ ଦେଇପାରେ ନାହିଁ । ଏ ସଂପର୍କରେ ପଣ୍ଡିତ ବିଶ୍ୱନାଥ କବିରାଜଙ୍କ କହନ୍ତି— "ଶବ୍ଦ ଓ ଅର୍ଥ କାବ୍ୟର ଶରୀର, ରସ ପ୍ରଭୃତି ତାର ଆତ୍ମା, ଗୁଣ ଶୌର୍ଯ୍ୟ ପରି । ଅଳଙ୍କାର ସମୂହ କନକ କୁଣ୍ଡଳ ପରି ।" ବାସ୍ତବକ୍ ଅଳଙ୍କାର କାବ୍ୟର ବାହ୍ୟ ଭୂଷଣ ଓ ରସ ତାର ଅନ୍ତରାତ୍ମା ।



# ଧ୍ୱନିବାଦ

## ଧ୍ୱନି : ସଂଜ୍ଞା ଓ ସ୍ୱରୂପ :—

ଧ୍ୱନି ଅଳଙ୍କାର ଶାସ୍ତ୍ରର ଏକ ପାରିଭାଷିକ ଶବ୍ଦ । ଏହା ରସ, ରୀତି, ଗୁଣ, ଅଳଙ୍କାର ବକ୍ରୋକ୍ତି ଆଦି ଉପାଦାନସହ କାବ୍ୟରେ ଅନ୍ତର୍ଭୁକ୍ତ ହୋଇ କାବ୍ୟର ଚମତ୍କାରିତା ସମ୍ୱର୍ଦ୍ଧନ କରେ । ଏହି ଧ୍ୱନି କଣ ତାହା ଜାଣିବାକୁ ହେଲେ କାବ୍ୟରେ ବ୍ୟବହୃତ ହୋଇଥିବା ଶବ୍ଦର ବିବିଧ ଅର୍ଥ ସଂପର୍କରେ ସମ୍ୟକ ଅବହିତ ହେବାକୁ ହେବ । ଅଭିଧା, ଲକ୍ଷଣା ଏବଂ ବ୍ୟଞ୍ଜନା— ଏହି ବିବିଧ ବୃତ୍ତି ଦ୍ୱାରା ଅର୍ଥ ପ୍ରତୀତ ହୁଏ । ଅଭିଧା ବୃତ୍ତି ଦ୍ୱାରା ବାଚ୍ୟାର୍ଥ, ଲକ୍ଷଣା ବୃତ୍ତି ଦ୍ୱାରା ଲକ୍ଷ୍ୟାର୍ଥ ଏବଂ ବ୍ୟଞ୍ଜନା ବୃତ୍ତି ଦ୍ୱାରା ବ୍ୟଙ୍ଗ୍ୟାର୍ଥ ପ୍ରତୀତ ହୋଇଥାଏ । 'ଅଭିଧା' କହିଲେ ଅଭିଧାନଗତ ଅର୍ଥ ; ଲକ୍ଷଣା କହିଲେ ରୂଢ଼ ବା ପ୍ରୟୋଜନ ଅନୁସାରେ ସିଦ୍ଧ ହୋଇଥିବା ଅର୍ଥକୁ ବୁଝିବାକୁ ହେବ । ମାତ୍ର ଏହି ଦୁଇଟି ବୃତ୍ତି ଦ୍ୱାରା ଯଦି ଅର୍ଥ ସିଦ୍ଧ ନ ହେଲା ତେବେ ଆମକୁ ପଦର ବ୍ୟଞ୍ଜନା ବୃତ୍ତିକୁ ଆଶ୍ରୟ କରିବାକୁ ପଡ଼ିବ । ଏହା ଦ୍ୱାରା ସିଦ୍ଧ ଅର୍ଥକୁ ବ୍ୟଙ୍ଗ୍ୟାର୍ଥ, ଧ୍ୱନ୍ୟାର୍ଥ, ଆକ୍ଷେପାର୍ଥ, ଆଶୟାର୍ଥ, ସୂଚ୍ୟାର୍ଥ ଓ ପ୍ରତୀୟମାନ ଅର୍ଥ ଆଦି କହନ୍ତି । "ସରଯୂର ଅଙ୍କେ ରମ୍ୟ ନଗରୀ"— ଏହି ପାଦଟିର ଅର୍ଥ କିପରି ସିଦ୍ଧ ହେବ ? ସରଯୂ ନଦୀର ଅଙ୍କରେ ରମ୍ୟ

ଅଯୋଧ୍ୟା ନଗରୀ ରହି ନ ପାରେ । ତେଣୁ ଏଠାରେ 'ସରଯୂର ଅଙ୍କେ' ପ୍ରବାହମାନ 'ନଦୀ ବିଶେଷର ତୋଟାନ୍ତର' ଏହି ଅର୍ଥକୁ ସୂଚିତ କରୁନାହିଁ । ବାଚ୍ୟାର୍ଥ ଅଗ୍ରହଣୀୟ ହେବାରୁ 'ଅଙ୍କ' ଶବ୍ଦର ପ୍ରୟୋଜନ ଲକ୍ଷଣା ଦ୍ୱାରା ନଦୀର 'ତଟଦେଶ' ବୋଲି ବୁଝାଇ ଦିଆଯାଇଛି । ସୁତରାଂ ଉକ୍ତ ପଦର ଅର୍ଥ ପ୍ରତୀତ ପାଇଁ ଲକ୍ଷ୍ୟାର୍ଥର ଆଶ୍ରୟ ନେବାକୁ ପଡ଼ିଲା । କିନ୍ତୁ ଆମେ ପଦ୍ୟ କହୁଁ 'ପଦ୍ମ ମଣ୍ଡଳନ୍ତି' — ଏଠା ପ୍ରେମିକା ପ୍ରତି ଅଭିସାର ସମୟ ପାଇଁ ପ୍ରସ୍ଫୁଟନ ଇଂଗୀତ ଦେବ, ଶିଷ୍ୟ ପ୍ରତି ସାଧ୍ୟାକ୍ଷ କିମ୍ବାର କର୍ମ ଗ୍ରହଣୀ ପ୍ରତି ବୃନ୍ଦାବନୀ ଆବାଧନାର ଇଂଗୀତ ଦେବ । ଏ ସବୁ ବାଚ୍ୟାର୍ଥ କିମ୍ବା ଲକ୍ଷ୍ୟାର୍ଥ ଦ୍ୱାରା ସିଦ୍ଧ ହେଉନାହିଁ । ଏହା ବ୍ୟଞ୍ଜନ ବୃତ୍ତି ଦ୍ୱାରା ଲବ୍ଧ ହେଲା । 'ସେ ବ୍ରାହ୍ମଣ ଗଙ୍ଗାରେ ବାସ କରେ' — ଏହି ଗୋଟିଏ ଉଦାହରଣ ନେଇ ଏହାର ବାଚ୍ୟାର୍ଥ, ଲକ୍ଷ୍ୟାର୍ଥ ଏବଂ ବ୍ୟଙ୍ଗ୍ୟାର୍ଥ ବୁଝାଇ ଦିଆ ଯାଇଛି । 'ଗଙ୍ଗାରେ' ନଦୀ ବିଶେଷ ଅର୍ଥରେ ବାଚକ 'ତଟଦେଶ' ଅର୍ଥରେ ଲକ୍ଷଣିକ ; ଏବଂ ଶୀତଳତ୍ୱ, ପାବନତ୍ୱ ଓ ମନୋରମତ୍ୱ ଅର୍ଥରେ ବ୍ୟଙ୍ଗ୍ୟ ବା ବ୍ୟଞ୍ଜକ । ବ୍ୟଞ୍ଜନା ଶାବ୍ଦୀ ଓ ଆର୍ଥୀ ଭେଦରେ ଦ୍ୱିବିଧ । ଶାବ୍ଦୀ ବ୍ୟଞ୍ଜନାରେ ଶବ୍ଦର ପ୍ରାଧାନ୍ୟ ରକ୍ଷିତ ହୋଇଥାଏ । ଏହା ଅଭିଧାମୂଳା ଏବ ଲକ୍ଷଣାମୂଳା ଭେଦରେ ଦୁଇ ପ୍ରକାର । ଆର୍ଥୀ ବ୍ୟଞ୍ଜନାରେ ଅର୍ଥର ପ୍ରାଧାନ୍ୟ ଥାଏ । ଏହା ବକ୍ତୃ ଆଦି ବୈଶିଷ୍ଟ୍ୟ ଉପରେ ପ୍ରତିଷ୍ଠିତ ।

ବକ୍ତୃ ବୋଦ୍ଧବ୍ୟ ବାକ୍ୟ ନାମନ୍ୟ ସନ୍ନିଧି ବାଚ୍ୟୋଯ୍ୟେଃ
ପ୍ରସ୍ତାବ ଦେଶ କାଳାନାଂ କାକ୍ୱୋ ଶ୍ଚେଷ୍ଟା ଦିକସ୍ୟଚ ।

— ବିଶ୍ୱନାଥ—

ବକ୍ତୃ, ବୋଦ୍ଧବ୍ୟ, କାକୁ, ବାକ୍ୟ, ଅନ୍ୟ ସନ୍ନିଧି, ବାଚ୍ୟ, ପ୍ରସ୍ତାବ, ଦେଶକାଳ ଚେଷ୍ଟାଦି ବୈଶିଷ୍ଟ୍ୟ ଦ୍ୱାରା ଲବ୍ଧ ଅର୍ଥାନ୍ତରକୁ ପ୍ରତୀତ କରାଇବା ବ୍ୟାପାରହିଁ ଆର୍ଥୀ ବ୍ୟଞ୍ଜନା । ଗୋଟିଏ ଉଦାହରଣରୁ ଏହାର ବିଶ୍ଳେଷଣ କରାଯାଉ :—

"ରହ ଅଟକାଇ ତଣ୍ଟାରେ ବସନ"
ବୋଲିବାରୁ ଉର୍ବଶୀ
"ଅଟକବ କାଣି— ଥିଲି ଛଟକଣି"
ସଜନୀ ବୋଇଲି ହସି ।

(ଉର୍ବଶୀ)

ଶଶିଲେଖା ଏବଂ ଉର୍ବଶୀଙ୍କ ମଧ୍ୟରେ କଥୋପକଥନରେ ଏକ ବକ୍ତୃ ବୈଶିଷ୍ଟ୍ୟ, କାକୁ ବୈଶିଷ୍ଟ୍ୟ ଓ ବୋଦ୍ଧବ୍ୟ ବୈଶିଷ୍ଟ୍ୟ ରହିଛି । ପୁରୁରବା ଉର୍ବଶୀଙ୍କର ଯୋଗ୍ୟ ବର । ଏକଥା ଶୁଣିବା ପରେ ଉର୍ବଶୀଙ୍କର ତାଙ୍କୁ ନୟନ ଭରି ଦେଖିବାର ଦୁର୍ବାର ଇଚ୍ଛା ମନ ମଧ୍ୟରେ ବଳବତୀ ହେବାରୁ ସେ ଟେକୁ ଫେରି ଗୃହକୁ ଯିବା ପାଇଁ ଏକ ଅଭିନବ ଉପାୟ ଉଦ୍ଭାବନ କରିଛନ୍ତି । ତଣ୍ଟାରେ ବସନ ଅଟକିବା ଏକ ସ୍ୱତନ୍ତ୍ର ଘଟଣା ; ଏହା ଆକସ୍ମିକ ନୁହେଁ ଚତୁରା ଶଶିଲେଖାର ଉତ୍ତର— "ଅଟକବ କାଣିଥିଲି ଛଟକଣି" ମଧ୍ୟରେ ରାଜକୁମାରୀ ପ୍ରତି ଏକ ମଧୁର ପରିହାସୋକ୍ତି ବ୍ୟଞ୍ଜିତ । ରାଜକୁମାରୀର ଉକ୍ତି ଏବଂ ଶଶିଲେଖାର ପ୍ରତ୍ୟୁକ୍ତି ମଧ୍ୟରେ ଥିବା ପ୍ରକୃତ ଅର୍ଥର ଚମତ୍କାରିତ୍ୱ ମୁଖ୍ୟତଃ ବୋଦ୍ଧବ୍ୟ ବୈଶିଷ୍ଟ୍ୟ ଦ୍ୱାରା ଲଭ୍ୟ । ବ୍ୟଞ୍ଜନା ବୃତ୍ତିର ଆଶ୍ରୟ ନେଇ ଏ ପ୍ରକାର ସୂକ୍ଷ୍ମାର୍ଥ ନିର୍ଣ୍ଣୟ କରାଯାଇଛି ।

ଯାହା ବ୍ୟଙ୍ଗ୍ୟ ତାହାହିଁ ଧ୍ୱନି । "ବ୍ୟଙ୍ଗ୍ୟ ପ୍ରଧାନେହ୍ୟ ଧ୍ୱନି"— ଆନନ୍ଦବର୍ଦ୍ଧନ । ମହା ମହା କବିମାନଙ୍କର ଲେଖନୀରୁ ନିସୃତ ହୋଇଥିବା କାବ୍ୟର ଚମତ୍କାରିତ୍ୱ ମୁଖ୍ୟତଃ କୁଶଳ ପଦ ପ୍ରୟୋଗ ଉପରେ ନିର୍ଭର କରେ । ତଥାପି ଏହି ପଦମାନଙ୍କର ବାଚକ ଅର୍ଥ ବାହାରେ ଏକ ଗୂଢ଼ ଏବଂ ସୂକ୍ଷ୍ମ ଅର୍ଥ ନିହିତ ଥାଏ । ଏହାକୁ ପ୍ରତୀୟମାନ ଅର୍ଥ କହନ୍ତି ।

ପ୍ରତୀୟମାନଂ ପୁନରନ୍ୟ ଦେବ, ବସ୍ତ୍ୱସ୍ତି ବାଣୀଷୁ ମହାକବୀନାଂ
ଯତ୍ତତ୍ ପ୍ରସିଦ୍ଧାବୟବାତିରିକ୍ତଂ ବିଭାତି ଲାବଣ୍ୟ ମିବାଙ୍ଗନାସୁ ।"
—ଶ୍ଲାଘ୍ୟ—

ଅଙ୍ଗନା ମାନଙ୍କର ଅଙ୍ଗର ଲାବଣ୍ୟ ସେମାନଙ୍କ ମୁଖ ଚକ୍ଷୁ ନାସାଦି ପ୍ରସିଦ୍ଧ ଅବୟବମାନଙ୍କୁ ଆଶ୍ରୟ କରିଥାଏ । ତଥାପି ଲାବଣ୍ୟ ଅବୟବାତିରିକ୍ତ ଏକ ବସ୍ତୁ ଯାହାକି ସେମାନଙ୍କର ଅଙ୍ଗ ଯଷ୍ଟି ମଧ୍ୟରେ ଅନ୍ତର ପ୍ରସରଣୀଳା କରେ । ମହା କବିମାନଙ୍କର ବାଣୀରେ ପ୍ରତୀୟମାନ ଅର୍ଥଟି ଠିକ ଏଇ ରୂପେ ଶବ୍ଦାବୟବ ମଧ୍ୟରେ ଝଲିତା କରେ । ଏହା ସ୍ୱ ଗୁଣରେ ଯେପରି ଉଦ୍ଦୀପ୍ତ ସେହିପରି ମନୋ-ମୁଗ୍ଧକାରୀ । ସୁତରାଂ ଧ୍ୱନ୍ୟାର୍ଥ ଏବଂ ବାଚ୍ୟାର୍ଥ ଗୋଟିଏ ଟଂକାର ଦୁଇପାର୍ଶ୍ୱ ପରି । କେହି କାହାରିକୁ ଛାଡ଼ି ରହି ନ ପାରେ । ଗୋଟିଏ ଘଣ୍ଟାର ମୁଖ୍ୟ ଧ୍ୱନି ପରେ ଏକ ଚମତ୍କାର ଅନୁରଣନ ସମ୍ଭୂତଥିତ ହୁଏ । ଏହା ଘଣ୍ଟାର ମୁଖ୍ୟ କର୍କଶ ଧ୍ୱନି ଠାରୁ ବହୁ ଗୁଣରେ ହୃଦୟ ଆହ୍ଲାଦକାରୀ । ସେଇ କର୍କଶ ଧ୍ୱନିରୁ ଏହାର ଉଦ୍ଭବ । ଧ୍ୱନି ବ୍ୟାପାରରେ ବାଚ୍ୟାର୍ଥ ଏବଂ ପ୍ରତୀୟମାନ ଅର୍ଥ ଏହିପରି ଓତଃପ୍ରୋତ ଭାବେ ଜଡ଼ିତ ।

## ଧ୍ୱନିର ପ୍ରକାର ଭେଦ :—

ଧ୍ୱନି ମୁଖ୍ୟତଃ ଦ୍ୱିବିଧ । ଶାବ୍ଦୀ ଏବଂ ଆର୍ଥୀ । ଆର୍ଥୀ ଧ୍ୱନିକୁ ଅଳଂକାରିକମାନେ ଅବିବେକ୍ଷିତବାଚ୍ୟ ଏବଂ ବିବକ୍ଷିତାନ୍ୟ-ପର ବାଚ୍ୟ ଭେଦରେ ଦୁଇଭାଗରେ ବିଭକ୍ତ କରନ୍ତି । ଶାବ୍ଦୀ ଧ୍ୱନିକୁ ଲକ୍ଷଣାମୂଳା ଓ ଅଭିଧାମୂଳା ଧ୍ୱନି ଭେଦରେ ପୁନଶ୍ଚ ଦୁଇଭାଗରେ ବିଭକ୍ତ କରାଯାଏ । 'ସେ ବ୍ରାହ୍ମଣ ଗଙ୍ଗାରେ ବାସ କରେ'— ଏଠାରେ ଗଙ୍ଗାର ଶୀତଳତ୍ୱ, ପାବନତ୍ୱ ଆଦି ଅର୍ଥ ଲକ୍ଷଣାମୂଳା ବ୍ୟଞ୍ଜନାବୃତ୍ତି ଦ୍ୱାରା ସିଦ୍ଧ ହେଲା । ତେଣୁ ଏହା ଲକ୍ଷଣାମୂଳା ଧ୍ୱନିର ଉଦାହରଣ— 'ସ୍ଥାଣୁଙ୍କୁ ପ୍ରଣାମ କର'— ଏ ବାକ୍ୟରେ 'ସ୍ଥାଣୁ'ର ବାଚକ ଅର୍ଥ ନଣ୍ଡା ବୃକ୍ଷଗଣ୍ଡ । ତାକୁ ପ୍ରଣାମ କରିବାରେ କାରଣ ନାହିଁ । ତେଣୁ 'ସ୍ଥାଣୁ' ଏଠାରେ ଶିବ ଅର୍ଥରେ ଗ୍ରହଣୀୟ । ଏହା ଅଭିଧାମୂଳା ବ୍ୟଞ୍ଜନାର ଉଦାହରଣ । ଆର୍ଥୀଧ୍ୱନି ବିବକ୍ଷିତାନ୍ୟ ପର ବାଚ୍ୟ ଓ ଅବିବେକ୍ଷିତ ବାଚ୍ୟ ଭେଦରେ ଦ୍ୱିବିଧ । ବିବେକ୍ଷିତାନ୍ୟ ପର ବାଚ୍ୟରେ ବାଚ୍ୟାର୍ଥ ଅଭିପ୍ରେତ ହେଲେହେଁ ତାହା ଅନ୍ୟପର ବା ଅନ୍ୟ ଅର୍ଥକୁ ପ୍ରଧାନ କରେ । ଅବିବେକ୍ଷିତ ବାଚ୍ୟଧ୍ୱନିରେ ବାଚ୍ୟାର୍ଥ ଅନଭି-ପ୍ରେତ । ଏହା ପୁନଶ୍ଚ ଦ୍ୱିବିଧ— ଅର୍ଥାନ୍ତର ସଂକ୍ରମିତ ବାଚ୍ୟଧ୍ୱନି ; ଅତ୍ୟନ୍ତତିରସ୍କୃତ ବାଚ୍ୟଧ୍ୱନି । ଗୀତକ ବିଧିରେ—

ସାଧିତ ଏଥିରୁ ଏକା ଧାମ ପରାକ୍ରମ
ଗୀତକର ଅଭିଳାଷ ଯମୁନାତ କର୍ମ
ଏ ବାକ୍ୟରେ ନାହିଁ ଭବ ଆନ ପ୍ରତିକାର
ଦ୍ୱିତୀୟ ସ୍ୱାମୀଙ୍କି ଭଜ ଏ ଅମ୍ବ କହୁର ।—

ଯୁଧିଷ୍ଠିରଙ୍କ ପ୍ରଯୁକ୍ତ ଏହି ପଦ୍ୟାବଳୀରେ ବାଚ୍ୟାର୍ଥଟି ଅନଭିପ୍ରେତ, ପ୍ରତୀୟମାନ ଅର୍ଥହିଁ ଅଭିପ୍ରେତ । ଏହା ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ଧ୍ୱନିର ଉଦାହରଣ । ବାଚ୍ୟାର୍ଥ ଏକାବେଳକେ ତିରସ୍କୃତ ହେଲେ ଅର୍ଥାତ୍ ଗ୍ରହଣଯୋଗ୍ୟ ନ ହେଲେ ଅତ୍ୟନ୍ତ ତିରସ୍କୃତ ବାଚ୍ୟଧ୍ୱନି ହେବ । ଉଦାହରଣ ସ୍ୱରୂପ—

"ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ
ଜଗତ୍କାରେ ପୁରୁଷ ଗୋ ଅନ୍ୟ ଏ ଜନ ।"

ଏଠାରେ ବାଚ୍ୟାର୍ଥ ଅତ୍ୟନ୍ତ ତିରସ୍କୃତ ଏବଂ ବିପରୀତ ଅର୍ଥଟି ଦ୍ୟୋତିତ । ଅନ୍ୟ ଏକ ଉଦାହରଣରୁ ଏହାର ସ୍ପଷ୍ଟ ଉପଲବ୍ଧି ।

"ହେ ଧାର୍ମିକ ! ଗୋଦାବରୀ ତଟ ଦେଶରେ ଏବେ ନିଃଶଙ୍କ ହୋଇ ବିହାର କର । କାରଣ ଏଠି ଦୃପ୍ତ ସିଂହ ସେ କୁକୁରଟାକୁ ମାରି ପକାଇଛି ।"— ଏଠାରେ ବାଚ୍ୟାର୍ଥ ଏକାବେଳକେ ତିରସ୍କୃତ ହେଉଛି । 'ହେ ଧାର୍ମିକ ! ଭ୍ରମଣ କରନାହିଁ— ସିଂହ ଅଛି !'— ଏହାହିଁ ଦ୍ୟୋତିତ ହେଉଛି । ତେଣୁ ଅତ୍ୟନ୍ତ ତିରସ୍କୃତ ଧ୍ୱନି ।

ବିବକ୍ଷିତାନ୍ୟପର ବାଚ୍ୟ ଧ୍ୱନିରେ ବାଚ୍ୟାର୍ଥ ବ୍ୟଞ୍ଜନାସୂ ହୁଏ । ଏହା ଅସଂଲକ୍ଷ୍ୟକ୍ରମ ଓ ସଂଲକ୍ଷ୍ୟକ୍ରମ ଭେଦରେ ଦୁଇ ପ୍ରକାର ।

**ଅସଂଲକ୍ଷ୍ୟକ୍ରମ —**

ଧ୍ୱନିରେ ରସ, ଭାବ, ଆଦି ବ୍ୟଙ୍ଗ୍ୟ ହୁଏ । ଏହାର କ୍ରମ ସମ୍ୟକ୍ ଲକ୍ଷିତ ହୋଇ ନ ଥାଏ । ପ୍ରଦୀପଟିଏ ଜଳିଲେ ତାହା ନିଜର ଜ୍ୟୋତି ବିକିରଣ କରେ ଓ ଅନ୍ୟର ସ୍ୱରୂପ ମଧ୍ୟ ଦର୍ଶାଇ ଦିଏ । ପ୍ରଦୀପର ଜ୍ୱଳନ ଏବଂ ଦୀପ୍ତି ପ୍ରକାଶ ଏହି ଦୁଇଗୋଟି କ୍ରିୟା ମଧ୍ୟରେ ନିର୍ଦ୍ଦିଷ୍ଟ କ୍ରମ ଲକ୍ଷିତ ହୋଇ ନ ଥାଏ ।

ସେହିପରି ଅସଂଲକ୍ଷ୍ୟକ୍ରମ ଧ୍ୱନିରେ ବାଚ୍ୟାର୍ଥ ବ୍ୟଙ୍ଗ୍ୟାର୍ଥକୁ ସୂଚାଏ ଅଥଚ ଅଭିଧା ଏବଂ ବ୍ୟଞ୍ଜନା ମଧ୍ୟରେ କୌଣସି ପୌର୍ବାପର୍ଯ୍ୟ ସଂପର୍କ ନ ଥାଏ । ଏହାକୁ ରସଧ୍ୱନି ବୋଲି କହନ୍ତି । ବିଶିଷ୍ଟ ବିଭାବାଦି ବର୍ଣ୍ଣନା ଦ୍ୱାରା ଏହା ସିଦ୍ଧ ହୁଏ । କୁମାର ସମ୍ଭବରେ ପାର୍ବତୀଙ୍କ ହରଙ୍କ ଉପରେ ନୟନପାତ ଠାରୁ ବିବାହ ପର୍ଯ୍ୟନ୍ତ ଶ୍ଳୋକ ଗୁଚ୍ଛକରେ ରସଧ୍ୱନି ଲଭ୍ୟ । ରସକଲ୍ଲୋଳର ଭିନ୍ନ ଉକ୍ତି ଗୁଚ୍ଛକରେ ରସଧ୍ୱନି ଅନ୍ତର୍ଗର୍ଭିତ ।

"କବେ ବାସ ମୁଖ ମୁଖଦେଇ ମୁଖ ତଳକୁ କଲ ଲଜ୍ଜାବତୀ
କଥା କହୁକହୁ କେଉଁ ସୁଖଶିଖ ହେଅନ୍ତା କହହେ ସୁମତି ।
କମଳା, କଂଠରେ କଲ କୋଣ ଦୃଷ୍ଟି
କୃଷ୍ଣ ହୃଦୟ ଧଇର୍ଯ୍ୟ ଭଙ୍ଗିଲୁ
ସେ କଲ ନାହାର ବାତ ବୃଷ୍ଟି ।" (ରସକଲ୍ଲୋଳ)

ହାତରେ ଓଢଣା — ବାସ ମୁଖ ଠାଣି ଅଧୋମୁଖ ହେବାର ବିଷୟରୁ ନାୟିକାର ଅନ୍ତଃ ପ୍ରକୃତି ଦ୍ୟୋତିତ । ଏଠାରେ ବାଚ୍ୟାର୍ଥ ଏବଂ ଧ୍ୱନ୍ୟାର୍ଥର କ୍ରମ ସଂଲକ୍ଷିତ ହେଉନାହିଁ । ତେଣୁ ଅସଂଲକ୍ଷିତ କ୍ରମ ଧ୍ୱନି ।

**ସଂଲକ୍ଷ୍ୟ କ୍ରମ** ଧ୍ୱନିରେ ବାଚ୍ୟାର୍ଥ ସ୍ପଷ୍ଟ ପ୍ରତୀତ ହୋଇ କ୍ରମେ ବ୍ୟଙ୍ଗ୍ୟାର୍ଥ ସଂଲକ୍ଷିତ ହୋଇଥାଏ । ଏହା ବସ୍ତୁଧ୍ୱନି ଏବଂ ଅଳଙ୍କାର ଧ୍ୱନି ଭେଦରେ ଦ୍ୱିବିଧ ।

**ବସ୍ତୁଧ୍ୱନି** :— ଏଥିରେ ବାଚ୍ୟାର୍ଥ ସ୍ପଷ୍ଟ ଲକ୍ଷ୍ୟ କରିହୁଏ । ମାତ୍ର ବାଚ୍ୟାର୍ଥ ବିଧି ମୂଳକ ହେଲେ ବ୍ୟଙ୍ଗ୍ୟାର୍ଥ ନିଷେଧ ମୂଳକ ହୁଏ । କିମ୍ବା ଗୋଟିଏ ନିଷେଧ ମୂଳକ ଓ ଅନ୍ୟଟି ବିଧିମୂଳକ ହୋଇ ପାରେ । ଉଦାହରଣ :—

ଏକାକିନୀ ସଦ୍‌ବଳା ତରୁଣୀ ଭଥାହଂ
ଅସ୍ମିନ୍ ଗୃହେ ଗୃହପତିଶ୍ଚ ଗତୋ ବିଦେଶଂ
କଂ ଯାଚସେ ତଦିହ ବାସମିୟଂ ବରାକୀ
ଶ୍ୱଶ୍ରୂ ମମାନ୍ଧ ବଧିର ନନୁ ମୂଢ଼ ପାନ୍ଥଃ ।

ହେ ମୂଢ଼ପାନ୍ଥ ! ମୁଁ ଏକାକିନୀ ଅବଳା ତରୁଣୀଟିଏ । ଏ ଘରେ ମୋ ସ୍ୱାମୀ, ଗୃହପତି ନାହାନ୍ତି । ସେ ବିଦେଶ ଯାଇ-ଛନ୍ତି । ମୋ ପରି ଅନ୍ଧ ବଧିରା ନାହିଁକା (ବରାକୀ)ଠାରେ ତୁମର ରାତ୍ରି ଯାପନ ପାଇଁ ଏ ଘରେ ସ୍ଥାନ ପ୍ରାର୍ଥନା କରିବାରେ କି ଲାଭ ? (ଏ ପ୍ରକାର ପ୍ରାର୍ଥନା ଅନୁଚିତ) । ଏଠାରେ ବାଚ୍ୟାର୍ଥଟି ନିଷେଧ ମୂଳକ ହେଲେହେଁ ବ୍ୟଙ୍ଗ୍ୟାର୍ଥ ବିଧିମୂଳକ । ଅର୍ଥାତ୍ ହେ ମୂଢ଼ ପାନ୍ଥ— ଏ ସୁବର୍ଣ୍ଣ ସୁଯୋଗ ତ୍ୟଜନାହିଁ । ଏଠାରେ ମୋ ସହ ରାତ୍ରି ଉଦ୍‌ଯାପନ କର ।

ଆଉ ଏକ ଉଦାହରଣ :—

ଯାଅ ଯାଅ ପ୍ରାଣନାଥ ନ କରିବି ମନା
ପଥେ ସର୍ବ ଶୁଭ ହେଉ ତବ ।
ଦ୍ୱାରେ ସଜା ପୂର୍ଣ୍ଣକୁମ୍ଭେ ନବ ଚୂତପତ୍ର
ଗଲାବେଳେ ଗୃହ ଦେଇ ଯିବ । (ପଣ୍ଡିତ ନୀଳକଣ୍ଠ)

ଏଠାରେ ବାଚ୍ୟାର୍ଥ ବିଧି ମୂଳକ । ପ୍ରାଣନାଥ ! ମୁଁ ତାହାଙ୍କୁ ମନା କରିବି, ତୁମ୍ଭେ ଯାଅ । ତୁମର ଶୁଭକାମନା କରି ପୂର୍ଣ୍ଣକୁମ୍ଭ ସ୍ଥାପନା କରିଛି । ଗଲାବେଳେ ତାକୁ ଟିକିଏ ଗୃହ ଦେଇ ଯିବ ।

**ବ୍ୟଙ୍ଗ୍ୟାର୍ଥ :—** ମୁଁ ପୂର୍ଣ୍ଣ ଯୌବନାରମ୍ଭଗର୍ଭା ନାୟିକା । ମୋର ଉନ୍ନତ ପୟୋଧର ଶୃଙ୍ଗାର ଧର୍ମରେ ପରିପୂର୍ଣ୍ଣ । ତାହା ଆଙ୍ଗକୁ ବସନ୍ତର ଆଗମନ ( ତେଣୁ ଋତୁପତି ପଲ୍ଲବିତ ) । ଏ ଅବସ୍ଥାରେ ଯାଅ ନାହିଁ । ଯଦି ଯିବ ଶୀଘ୍ର ଫେରିବ ।

ଏ ଉଭୟ ଉଦାହରଣରେ ଅର୍ଥାନ୍ତର ସୌନ୍ଦର୍ଯ୍ୟ ଲକ୍ଷିତ ହେଉଛି । ଯାହା ବସ୍ତୁଧ୍ୱନିରେ ନାହିଁ ।

**ଅଲଙ୍କାର ଧ୍ୱନି :—** ଏଠାରେ ଅଲଙ୍କାରହିଁ ବ୍ୟଙ୍ଗ୍ୟ ବା ବ୍ୟଞ୍ଜ୍ୟ ଅର୍ଥାତ୍ ଅଲଙ୍କାର ସ୍ପଷ୍ଟଭାବେ ବ୍ୟକ୍ତ ନ ହେଲେହେଁ ତାହା ସଂଲକ୍ଷ୍ୟ ହେବ ବା ବୋଧ । ଉଦାହରଣ ସ୍ୱରୂପ :—

"କନକଲତାରେ କମଳ ତୋଳରେ ଝଳାଶେ ବେନି ଉଦୀତର
କୁନ୍ଦ କଳସଂଗେ ଫୁଟିଅଛି ରଙ୍ଗେ ବନ୍ଧୁ ଜୀବକ ମନୋହର
କମଳା, କୋକନଦରେ ଚନ୍ଦ୍ରପାଳି, କପଟ୍ଟ ଏ ଲତା—
ଗଢ଼ଛି ବିଧାତା, ଶିବକୁ ଉଡ଼ଅଛି ବଳ ।

(ଉପେନ୍ଦ୍ରଭଞ୍ଜ)

ଅଥବା

କୁଚ ଗୃହିଁ କଚ କମ୍ପନ ହେଉଛି କଚ ଗୃହିଁ କୁଚ କମ୍ପନ
ନୟନ ଲୋକନେ କଟି ଉସ୍ତବନ ଉଟରେ କଟିଦେଖି ନୟନ
ଅଛି ଆହୁତ, ସେ ଅଙ୍ଗେ ଆଶ୍ଚର୍ଯ୍ୟ ଅପାର ।
ଭୁଜ ଗୃହିଁ ଗତି କାତର ହେଉଛି, ଗତି ଗୃହିଁ ଭୁଜ କାତର ।

(ପ୍ରେମସୁଧାନିଧି ୪—୧୫)

**ବାଚ୍ୟାର୍ଥ :—** କୁଚ— ଚକ୍ରବାକ, କଚ (କେଶ)-ଗ୍ରନ୍ଥି— ତେଣୁ କୁଚ କଚକୁ ଦେଖି ପ୍ରକମ୍ପିତ ହେଉଛି । ପୁଣି ସ୍ତନ ଚକ୍ର-ବାକ କେଶ- ଶୈବାଳକୁ ଖାଇଯିବ କି ? କଚର କୁଚକୁ ଭୟ । ନୟନ ଦେଖିକୁ ଦେଖି କଟି ରୂପକ ସିଂହ ଉଦ୍ଧାର୍ତ୍ତ ହେବାବେଳେ

ସେ ସିଂହକୁ ଦେଖି ନୟନ ମୃଗ ଆତଂକିତ ହୋଇଛନ୍ତି । ଭୃଙ୍ଗ ରୂପକ ପାଶ ଦେଖି ଗଜ—ହଂସ ଯେତିକ କାତର, ଗଜ—ହଂସକୁ ଦେଖି ଭୃଙ୍ଗ ମୃଣାଳ ଭକ୍ଷିତ 'ହୋଇଯିବା ଭୟରେ ମଧ୍ୟ ସେତିକ ବିହ୍ୱଳିତ ।

**ବ୍ୟଙ୍ଗ୍ୟାର୍ଥ :—** ପ୍ରେମସୁଧାନିଧିରେ କୁଚକୁ ଚକ୍ରବାକ ସହିତ କଟିକୁ ସିଂହ ଓ ଶୈବାଳ ସହିତ ତୁଳନା କରି କବି ଉପମା-ଲଙ୍କାର ବ୍ୟକ୍ତ ହୋଇଥିବା କଥାର ଇଙ୍ଗିତ ମାତ୍ର ଦେଇଛନ୍ତି । ଉପମାଳଙ୍କାର ପ୍ରତ୍ୟକ୍ଷ ଭାବେ ସ୍ପଷ୍ଟ ହୋଇ ନ ଥିଲେହେଁ ଏହା ବ୍ୟଙ୍ଗ୍ୟ । ପୂର୍ବୋକ୍ତ "କନକଲତା............।" ଉଦାହରଣରେ ଗୋପିକାର ଅଙ୍ଗ ଯଷ୍ଟିକୁ ସୁବର୍ଣ୍ଣର ଲତା ସହିତ, ମୁଖକୁ କମଳ ସହିତ, ଆଖିକୁ ଇନ୍ଦୀବର ସହିତ ତୁଳନା କରାଯାଇଛି । ଏହା ଧ୍ୱନି ବ୍ୟାପାରରୁ ହିଁ ସିଦ୍ଧ ହେଉଥିବାରୁ ଏଠାରେ ଅଳଙ୍କାର ଧ୍ୱନି ରହିଥିବା କଥା ସୂଚିତ ହେଉଛି । ପୂର୍ବୋକ୍ତ ସମସ୍ତ ଆଲୋଚନାରୁ ସ୍ୱୀକୃତ ହେଉଛି ଯେ— ଧ୍ୱନି, ଶବ୍ଦ ଶକ୍ତି ଉଦ୍ଭବ, ଅର୍ଥଶକ୍ତ୍ୟୁ-ଦ୍ଭବ କିମ୍ବା ଶବ୍ଦାର୍ଥ ଉଭୟ ଶକ୍ତ୍ୟୁଦ୍ଭବ ହୋଇପାରେ । ପୂର୍ବେ ଧ୍ୱନି ସବୁ କାବ୍ୟର ନିତ୍ୟାତ୍ମକ ଥିଲା । ତେଣୁ ଉପେନ୍ଦ୍ର, ଭଞ୍ଜାଦି ରୀତିଯୁଗର ସ୍ରଷ୍ଟାଗଣ ସେମାନଙ୍କ କାବ୍ୟରେ ଏହାକୁ ମୁଖ୍ୟସ୍ଥାନ ଦେଇଯାଇଛନ୍ତି । ଉପେନ୍ଦ୍ରଙ୍କର "ପଦସରଳ ଧ୍ୱନିରେ ମାନସ ମୋହିବ" — ଉକ୍ତି ପାଠକରି ଧ୍ୱନି ଗର୍ଭିତ କାବ୍ୟ ଯେ ତାଙ୍କ ଦୃଷ୍ଟିରେ ସତ୍କାବ୍ୟ ଏହା କହିବା ଦ୍ୱିରୁକ୍ତି ମାତ୍ର । ଲବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏବଂ ବୈଦେହୀଶ ବିଳାସ'ରେ ଧ୍ୱନି ବହୁ ପରିମାଣରେ ଲଭ୍ୟ । ଲବଣ୍ୟବତୀରୁ ଦୁଇଟି ମାତ୍ର ଉଦାହରଣ ଦେଇ ବିଚାର କରୁଛି :—

ଅଙ୍ଗଠାରୁ ତୋର ମୋର ମାଳତୀ
ହୋଇ ନାକଲ ସେ ବଦନ ତୋଷ
କେଶୁ କରୁଣାକ
ଦେଖାଇ ବନ୍ଧୁଲି ଏ ନାମେ ଡାକ ।
(ଲବଣ୍ୟବତୀ-୫୯-୩୨)

ବାଚ୍ୟାର୍ଥ :— ଅଙ୍ଗଠାରୁ ତୁ (ଲବଣ୍ୟବତୀ) ଏବ ମୁଁ (ଚନ୍ଦ୍ରଭାନୁ) ମାଳତୀ ବସିବା । ଅର୍ଥାତ୍ ଲବଣ୍ୟବତୀକୁ ନାୟକ ଚନ୍ଦ୍ରଭାନୁ ମାଳତୀ ବୋଲି ଡାକିବ । ଏଥିରେ ନାୟିକା ସମ୍ମତ ନ ଜଣାଇ କେଶରୁ ଦାସ କେରଣ୍ଡା ଫୁଲଟିଏ ବାହାର କରି ଦେଖାଇ ସେହି ନାମରେ ଡାକିବାକୁ ପ୍ରାର୍ଥନା କଲ ।

ବ୍ୟଙ୍ଗ୍ୟାର୍ଥ :— ନାୟକ ଭ୍ରମର ତୁଲ୍ୟ ହୋଇ ମାଳତୀ ପୁଷ୍ପ (ଲବଣ୍ୟବତୀ) ଉପରେ କ୍ରୀଡ଼ା କରିବାକୁ ପ୍ରାର୍ଥୀ ହୁଅନ୍ତେ ଦାସ କେରଣ୍ଡା ଫୁଲଟିଏ ଦେଖାଇ ଲବଣ୍ୟବତୀ କହିଲା ; ବସେଇ ବଡ ନୁହେଁ ; ସ୍ୱାଭାବିକ ଭାବରେହିଁ ସେ ଆସକ୍ତା । ଦାସ କେରଣ୍ଡା ଉପରେ ଭ୍ରମର ବସିଲେ ଫୁଲ ତଳେ ରହେ ଏବଂ ଭ୍ରମର ଉପରେ ରହେ । କିନ୍ତୁ ମାଳତୀ ପୁଷ୍ପ ଉପରେ ଭ୍ରମର ବସିଲେ ଫୁଲଟି ଏପରି ନଇଁପଡେ ଯେ ଭ୍ରମର ତଳେ ରହେ ଓ ଫୁଲ ଉପରେ ରହେ । ତେଣୁ ବିପରୀତ-ରତି ସଙ୍ଗେ ସମାନ । ଏହା ଏକ ରସଧ୍ୱନିର ଉଦାହରଣ ।

ଆଉ ଏକ ରସଧ୍ୱନିର ଉଦାହରଣ :-

ଚନ୍ଦ୍ର ମିତ୍ର ମୁଁ ଡକନ୍ତେ ଅନାଇ,
ପାନପିକ ଦେଲ ଆଗେ ପକାଇ ।
ରାଗେ ପୋଛି ପୁଣି ଭାଲ ସିନ୍ଦୂର,
ମୋର ହୃଦ କରଇଲ କାତର ।

(ଲାବଣ୍ୟବତୀ ୪୨।୩୨-୩୬)

ଯେବେ ଚନ୍ଦ୍ରଭାନୁ ଲାବଣ୍ୟବତୀକୁ ଚନ୍ଦ୍ର ରଜନୀରେ ଉପଭୋଗ କରିବା ନିମନ୍ତେ ତା' ନିକଟରେ ପହଞ୍ଚିଲା । ଏହାପରେ ବାଳା ପାନପିକ ପକାଇ ଦେଇ 'ମୁଁ ଋତୁମତୀ' ଏହା ସୂଚାଇଦେଲା । ଋତୁକାଳରେ ସିନ୍ଦୂର ଦେବା ନିଷେଧ । ତେଣୁ ବାମକରେ ତାହାକୁ ପୋଛିଦେଲା । ଚନ୍ଦ୍ରଭାନୁର ମନ ଆତୁର ହେବାର ଦେଖି ଲାବଣ୍ୟବତୀ ତା ଚନ୍ଦ୍ରମୁଖରୁ ହାସ ବାହାର କଲା । ତାପରେ ନାୟକ ଲାବଣ୍ୟବତୀର ଇଂଗିତ ଠିକ୍ ଉପଲବ୍ଧି କଲା । ଏଇ ଇଂଗିତଟି ହେଉଛି ହେ ପ୍ରିୟ ନାଥେ, ପାଣିରେ ପାନ ଅଛି; ମୋର ଅଧର ଚୁମ୍ବନ କାଳରେ ତୁମ ମୁଖରେ ଉଚ୍ଛିଷ୍ଟ ଲାଗିଯାଇପାରେ, ମଥାରେ ସିନ୍ଦୂର ତୁମର ମୁଖଶୋଭାକୁ ବିକୃତ କରିପାରେ ତେଣୁ ଅପେକ୍ଷା କର ।

ଏ ପ୍ରସଙ୍ଗରେ ଏପରି ସବୁ ଆଲୋଚନା କରିବାର ଲକ୍ଷ୍ୟ ହେଉଛି, ଧ୍ୱନି କାବ୍ୟର ଆତ୍ମା ହୋଇ ପାରିବକି ନାହିଁ ତା'ର ବିଚାର କରିବା ।

## ଧ୍ୱନି କାବ୍ୟର ଆତ୍ମା ?

ଧ୍ୱନି ଭାବକାର ସ୍ରଷ୍ଟା ଆନନ୍ଦ ବର୍ଦ୍ଧନ (୯ମ ଶତକର ଉତ୍ତରାର୍ଦ୍ଧ) ଧ୍ୱନିବାଦ ପ୍ରତିଷ୍ଠା କରିବାକୁ ଯାଇ କହି ଅଛନ୍ତି ; ଧ୍ୱନି ହେଉଛି କାବ୍ୟର ଆତ୍ମା । ତାଙ୍କ ପରେ ଅଭିନବଗୁପ୍ତ

(୧୦୩-୧୧୫) ଏହି ମତର ପୋଷକତା କରି ଧ୍ୱନିରେ ରସର ପ୍ରାଧାନ୍ୟ ସ୍ୱୀକାର କରିଛନ୍ତି । ସେ କହିଛନ୍ତି; "ତତ ରସ ପ୍ରଧାନେହି ବ୍ୟଙ୍ଗ୍ୟ ।" ତେଣୁ ଧ୍ୱନିବାଦ ପରୋକ୍ଷରେ ରସବାଦକୁ ସ୍ୱୀକାର କରେ । ଏଣୁ, 'ଧ୍ୱନିରାତ୍ମା କାବ୍ୟସ୍ୟ'— କହିବାରେ ଅସଂଗତ ନାହିଁ । ଧ୍ୱନି କାବ୍ୟକୁ ଉତ୍ତମ; ଗୁଣୀଭୂତବ୍ୟଙ୍ଗ୍ୟ କାବ୍ୟକୁ ମଧ୍ୟମ ଏବଂ ଚିତ୍ର କାବ୍ୟକୁ ଅଧମ କାବ୍ୟ ବୋଲି ଧ୍ୱନି-ବାଦୀମାନେ କହିଥାନ୍ତି । ଧ୍ୱନିର ପ୍ରକାର ଭେଦରେ ଦର୍ଶାଇ ଦିଆଯାଇଥିବା ରସଧ୍ୱନି; ଅଭିନବ ଗୁପ୍ତଙ୍କ ମତରେ ଶ୍ରେଷ୍ଠ ଧ୍ୱନି । ଧ୍ୱନିରେ ରସ, ଅଳଙ୍କାର ଏବଂ ବାଚ୍ୟାର୍ଥ ସ୍ୱୀକୃତ ହୋଇ ଥାଏ । ତେଣୁ ଏହାକୁ ରସ ଏବଂ ବକ୍ରୋକ୍ତିବାଦର ଏକ ସମୀକରଣ ବୋଲି ଗ୍ରହଣ କରି ନେଇହେବ । ତଥାପି ଏଥିରେ ଅତିବ୍ୟାପ୍ତି ଓ ଅବ୍ୟାପ୍ତି ଦୋଷ ରହିଛି । ଆନନ୍ଦ ବର୍ଦ୍ଧନ କହିଛନ୍ତି; ବ୍ୟଙ୍ଗ୍ୟ ପ୍ରଧାନେହି ଧ୍ୱନି, ନଚେତ୍ ସମାସୋକ୍ତ୍ୟା-ଦୟ ଅସ୍ତି ।" ସତ କାବ୍ୟରେ ବ୍ୟଙ୍ଗ୍ୟ ପ୍ରାଧାନ୍ୟଲାଭ କରିବ ଉଚିତ ! ସମାସୋକ୍ତି, ପ୍ରଗୌରବୋକ୍ତି ଆଦି ଅଳଙ୍କାରରେ ବ୍ୟଞ୍ଜନା ନ ଥିବାରୁ ତାହା ସାଧୁ କାବ୍ୟରେ ଆଧାରିତ ହୋଇ ପାରିବେ ନାହିଁ । ଏତଦ୍ ଦ୍ୱାରା କାବ୍ୟ ପରିସର ଆନନ୍ଦବର୍ଦ୍ଧନ ନିତାନ୍ତ ସଙ୍କୁଚିତ କରି ଦେଇଛନ୍ତି । ଜଗନ୍ନାଥଙ୍କ 'ନିର୍ଦ୍ଧରେଇ ହୃଦୁ ଭଙ୍ଗ' ଏବଂ ତଦନୁକରଣରେ ଲିଖିତ ମଧୁସୂଦନଙ୍କ 'ନଦୀ ପ୍ରତି' କବିତା ସେହି ନିକଷରେ ଅକାବ୍ୟ ଭାବେ ପରିଗଣିତ ହେବେ । କାରଣ ଏଥିରେ ସମାସୋକ୍ତି ଅଳଙ୍କାର ରହିଛି ।

ପୂର୍ବସ୍ଥ ସ୍ପୃଗ୍ର, ସମାଧି ବଧିର ଆଦି ଶ୍ଳୋକ ସତ୍କାବ୍ୟ ଶ୍ରେଣୀ ଭୁକ୍ତ ହୋଇପାରିବେ । ମାତ୍ର ଏଥିରେ ଉଚ୍ଚକୋଟୀର କବିତ୍ୱ ନାହିଁ, ଏହା ଚିତ୍ରବା ଅନାବେଶ୍ୟକ ।

କାବ୍ୟରେ ଅନୁଭୂତ ନ ଥିଲେ ତାହା ରସଧର୍ମୀ ହୋଇ ନ ପାରେ ଶୃଙ୍ଗାର ରସ ସମନ୍ୱିତ ଓ ଭକ୍ତ ଧାର୍ମିକ ଆଦି ଯେଉଁ ସବୁ ଉଦାହରଣ ଅଲଙ୍କାର ଶାସ୍ତ୍ରରେ ଲଭ୍ୟ ସେ ଗୁଡ଼ିକରେ ଅନୁଭୂତିର ସାମାନ୍ୟ ସ୍ପର୍ଶ ନାହିଁ ଅଥଚ ଧ୍ୱନିବାଦୀଙ୍କ ଆଖିରେ ତାହା ସତ୍‌କାବ୍ୟ । ଏହାହିଁ ଧ୍ୱନିବାଦର ଅତିବ୍ୟାପ୍ତି ଦୋଷ ।

,ବାକ୍ୟଂ ରସାତ୍ମକଂ କାବ୍ୟଂ' ଏବଂ 'ଧ୍ୱନିରାତ୍ମା କାବ୍ୟସ୍ୟ— ଏହି ଦୁଇ ଚରମମତ ବାଦ ମଧ୍ୟରେ ଏକ ମଧ୍ୟ ପନ୍ଥା ନିର୍ଦ୍ଦିଷ୍ଟ ହୋଇଛି । ତାହା ହେଉଛି ଜଗନ୍ନାଥ ପଣ୍ଡିତଙ୍କ ଦ୍ୱାରା ପ୍ରଦତ୍ତ କାବ୍ୟର ଆତ୍ମା ରସାତ୍ମକ ଧର୍ମ; "ଚମତ୍କାର ପ୍ରତିପାଦକ ଶବ୍ଦଃ କାବ୍ୟ' ବା ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟଂ ।



# ରୀତିବାଦ

## ଉପୋଦ୍‌ଘାତ :--

ବିଶ୍ୱର ପ୍ରତ୍ୟେକ ବସ୍ତୁ ପରସ୍ପରଠାରୁ ପୃଥକ । ଗୋଟିଏ ସୃଷ୍ଟି ଜନ୍ତୁ କୋଟିଏ ଦୃଷ୍ଟି । ହୁଏତ ବିଶ୍ୱର ସମଗ୍ର ମାନବ ସମାଜ ଏକ ହୋଇପାରେ ମାତ୍ର ବ୍ୟକ୍ତି ହିସାବରେ ପ୍ରତ୍ୟେକଙ୍କର ସ୍ୱାତନ୍ତ୍ର୍ୟ ସୁରକ୍ଷିତ । ଏହି ସ୍ୱତନ୍ତ୍ର ବିଶେଷଣ ହେତୁ ଜଣେ ଅନ୍ୟର ସତ୍ତ୍ୱା ମଧ୍ୟରେ ଲୁଚିରହି ପାରେନା । ସୁତରାଂ ସଂସାରର ପ୍ରତ୍ୟେକ ବ୍ୟକ୍ତି ଏକ ପ୍ରକାରର ଚିନ୍ତା କରନ୍ତି ନାହିଁ କିମ୍ବା ଏକ ପ୍ରକାରର କଥା କହନ୍ତି ନାହିଁ । ଏଇ ଭିନ୍ନତା ହେତୁ ସେମାନେ ସହଜରେ ଚିହ୍ନି ହୁଅନ୍ତି । ଉଦାହରଣ ସ୍ୱରୂପ ଆମେ ଯେତେବେଳେ କୌଣସି କଥାରେ କିମ୍ବା ଭାଷାରେ ଗାଉଁଲି ଶବ୍ଦ ବହୁଳ ସରଳତାର ଇଙ୍ଗିତ ପାଉଁ ତାକୁ କହୁଁ ଫକୀରମୋହନୀ କିମ୍ବା ଯେତେବେଳେ ସଂସ୍କୃତ ସଚେତନ ଆଳଂକାରିକ ପଦ ବିନ୍ୟାସର ପରିଚୟ ପାଉଁ ସେଠି କହୁଁ ଭଞ୍ଜୀୟ । ପୁଣି ଯେତେବେଳେ ସରଳ ମଧୁର ଭାଷାର ସୂଚନା ପାଉଁ ତାକୁ କହୁଁ ରାଧାନାଥୀ । ତେଣୁ କବିଭେଦ ; ଭାବ ଭଙ୍ଗୀ ବା ଶୈଳୀ ଭେଦ, ମଣିଷ ଭେଦ, ମଣିଷର ଭାଷା ଭେଦ । ସୁତରାଂ ଜଣଙ୍କର କଥନ ଭଙ୍ଗୀ ଅନ୍ୟର କଥନ ଭଙ୍ଗୀଠାରୁ ସଂପୂର୍ଣ୍ଣ ପୃଥକ । ସାଧାରଣରେ ଏହି କଥନ ଭଙ୍ଗୀର ସାହିତ୍ୟିକ ନାମହିଁ ସ୍ୱତ ।

## ରୀତି : ସଂଜ୍ଞା ଓ ସ୍ୱରୂପ :—

କିନ୍ତୁ ଭାରତୀୟ ଅଳଙ୍କାର ଶାସ୍ତ୍ରରେ ରୀତି ସମ୍ପର୍କରେ ବହୁମତ ଓ ବହୁ ସଂଜ୍ଞା । ରୀତି ଶବ୍ଦ ସାଧାରଣତଃ ରୀଙ୍ ଧାତୁରୁ 'କ୍ତିନ୍' ପ୍ରତ୍ୟୟ ଯୋଗରେ ନିଷ୍ପନ୍ନ— ଯାହାର ଅର୍ଥ, ଗତି, ପଦ୍ଧତି, ପ୍ରଣାଳୀ ଓ ମାର୍ଗ । କେହି ଏହି ରୀତି ଶବ୍ଦର ବ୍ୟୁତ୍ପତ୍ତି ପ୍ରଦାନ କରିବାକୁ ଯାଇ କହନ୍ତି ;— "ରୀଙ୍ ଗତାବିତି ଧାତୋଃ ସା ବ୍ୟୁତ୍ପତ୍ତ୍ୟା ରୀତିରୁଚ୍ୟତେ" — ଏହି ରୀତି ଶବ୍ଦ ଗତ୍ୟର୍ଥ ବୋଧକ ରୀଙ୍ ଧାତୁର ଉତ୍ତରରୁ କ୍ତିନ୍ ପ୍ରତ୍ୟୟ ହୋଇ ଜାତ ହୋଇଛି । ତେବେ ସାଧାରଣ ଅର୍ଥରେ ରୀତି ଲେଖକର ରଚନା ପ୍ରଣାଳୀକୁ ହିଁ ବୁଝାଇ ଥାଏ । ଈପ୍ସିତ ଅର୍ଥର ପ୍ରତି-ପାଦନ ପାଇଁ ଲେଖକ କବି ଭିନ୍ନ ଭିନ୍ନ ମାର୍ଗର ଆଶ୍ରୟ ନେଇ ଥାନ୍ତି । ତେଣୁ କବିଙ୍କ ନିକଟରେ ରୀତି ଏକ ନ ହୋଇ ଭିନ୍ନ ଭିନ୍ନ ରୂପରେ ରୂପାୟିତ ହୋଇଥାଏ ।

ଏହି ରୀତିର ପରମ୍ପରା ଅତି ପ୍ରାଚୀନ । ରୀତିର ସଂଜ୍ଞା କାଳାନୁକ୍ରମେ ପରିବର୍ତ୍ତିତ । ଦୃଷ୍ଟିଭେଦରେ ରୀତିର ରୂପ ପରିବର୍ଦ୍ଧିତ ଓ ବର୍ଜିତ । ରୀତି ଯେହେତୁ ଲେଖକର ଗୁଣଗତ ତେଣୁ କାବ୍ୟରେ ପ୍ରଯୁକ୍ତ ରୀତି କବିର ଆତ୍ମ ସ୍ୱଭାବ-ଅନୁକୂଳ ହେବା ସ୍ୱାଭାବିକ । ଏଣୁ ରୀତି ଯେ କେବଳ ସ୍ୱଭାବଜ ଓ ଗୁଣ-ଗତ—ତା'ହି ନୁହେଁ । ପରମ୍ପରା ଓ ପରିସ୍ଥିତି ମଧ୍ୟ ରୀତିର ରଚନା ପାଇଁ ଅନେକ ସାହାଯ୍ୟ କରିଥାଏ । କବି କାବ୍ୟରେ ନିଜର ଗୁଣ ଅନୁଯାୟୀ ପଦ ସଂଯୋଜନ କରେ । ସେଥିରେ ଭୌଗୋଳିକ ପରିସ୍ଥିତି ଓ ସାହିତ୍ୟିକ ପରମ୍ପରା ଯଥେଷ୍ଟ ପ୍ରଭାବ

ଯାଉଥାଏ । ତେଣୁ ଯେଉଁ ଭଳି ଯେପରି ପରିସ୍ଥିତି ଓ ଦେଶ-ପରିବେଶର ପ୍ରଭାବରେ ତାର କାର୍ଯ୍ୟରେ ସେଇ ସବୁ ପ୍ରଭାବର ପରିଣତ ହିଁ ଦେଖିବାକୁ ମିଳେ ।

ଅଳଙ୍କାର ଶାସ୍ତ୍ରର ଇତିହାସରେ ଏହି ରୀତିର ଅଭ୍ୟୁଦୟ ଆଦୌ ଆକସ୍ମିକ ନୁହେଁ । ବରଂ କ୍ରମିକ ବିକାଶ ପଥରେ ରୀତିର ଉତ୍ପତ୍ତି । ନାଟ୍ୟଶାସ୍ତ୍ର ପ୍ରଣେତା ଆଳଂକାରିକ ଭରତ (ଖ୍ରୀ:ପୂ ୧ମ ଶତକ ତାଙ୍କ ନାଟ୍ୟ ଶାସ୍ତ୍ରରେ ରୀତିର ଉଲ୍ଲେଖ ନ କରି ବୃତ୍ତିର ଉଲ୍ଲେଖ କରିଥିଲେ । କାବ୍ୟର ପଦ ବିନ୍ୟାସ ପ୍ରଣାଳୀକୁ ବୃତ୍ତି କୁହାଯାଉଥିଲା । ଏହା ଦେଶଗତ ଓ ବହୁଧା ବିଭକ୍ତ ହୋଇଥିଲା । ଭରତଙ୍କ ଦୃଷ୍ଟିକୋଣ ଓ ପଦ ସଂଯୋଜନା ଅନୁସାରେ ଦେଖି ଭରତ ଏହାକୁ ଭାରତୀ, ସାତ୍ତ୍ୱତୀ, କୈଶିକୀ ଓ ଆରଭଟୀ ଆଦି ଚାରିଭାଗରେ ବିଭକ୍ତ କରିଥିଲେ ।

ଋଗ୍‌ବେଦାଦ୍ ଭାରତୀ ବୃତ୍ତି ଯଜୁର୍ବେଦାତ୍ ସାତ୍ତ୍ୱତୀ
କୈଶିକୀ ସାମବେଦାତ୍ ଶେଷାଥର୍ବଣସ୍ତଥା ।

(ନାଟ୍ୟଶାସ୍ତ୍ର- ଭରତ)

(ଋକବେଦରେ ଭାରତୀ ବୃତ୍ତି, ଯଜୁର୍ବେଦରେ ସାତ୍ତ୍ୱତୀ, ସାମବେଦରେ କୈଶିକୀ, ଅଥର୍ବ ବେଦରେ ଆରଭଟୀ

ସଂସ୍କୃତ ଶବ୍ଦ ବହୁଳ ନାଟକର ପାତ୍ରମାନଙ୍କର ଉକ୍ତିକୁ ଭାରତୀ ବୃତ୍ତି କୁହାଯାଉଥିଲା । ସମସ୍ତ ସଂସ୍କୃତ ଉଦ୍‌ଦେଶରେ ଏହି ବୃତ୍ତି ଗୃହୀତ ହେଉଥିଲା ଏବଂ ଏଥିରେ କରୁଣ ଓ ଅଦ୍ଭୁତ ରସର ଅବତାରଣା କରାଯାଉଥିଲା । ସତ୍ତ୍ୱଗୁଣ ଯୁକ୍ତ ବୀର, ଅଦ୍ଭୁତ, ରୌଦ୍ରରସର ଉପଯୋଗୀ ରଚନାକୁ ସାତ୍ତ୍ୱତୀ ବୃତ୍ତି କୁହାଯାଉଥିଲା । ହାସ୍ୟ, ଶୃଙ୍ଗାର ଓ କରୁଣ ରସୋପଯୋଗୀ

ରଚନାକୁ ଚୈଣିକ ଏବ ଦମ୍ଭ ଅମ୍ଳାନ ମୂକ ଭଙ୍ଗୀମାନଙ୍କ, ଚଉଦ୍ଧ ଓ ବୌଦ୍ଧ୍ରର ଆଡମ୍ବର ପୂର୍ଣ୍ଣ ବାକ୍ୟ ବିନ୍ୟାସକୁ ଆରଭଟୀ ବୃତ୍ତି ଆଖ୍ୟା ଦିଆଯାଇଥିଲା । ଏତଦ୍ ବ୍ୟତୀତ ଭରତ ତାଙ୍କ ନାଟ୍ୟଶାସ୍ତ୍ରରେ ଆଞ୍ଚଳିକ ଆଚାର ବ୍ୟବହାର ଓ ଉଚ୍ଚାରଣାକୁ ନେଇ କେତୋଟି ପ୍ରବୃତ୍ତିର ଉଲ୍ଲେଖ କରିଥିଲେ । ଯଥା — ଆବନ୍ତୀ, ଦାକ୍ଷିଣାତ୍ୟା, ଓଡ୍ରମାଗଧୀ ଓ ପାଞ୍ଚାଳୀ ।

ଚତୁର୍ବିଧା ପ୍ରବୃତ୍ତିଶ୍ଚ ପ୍ରୋକ୍ତା ନାଟ୍ୟ ପ୍ରୟୋଗତଃ
ଆବନ୍ତୀ ଦାକ୍ଷିଣାତ୍ୟାଚ ପାଞ୍ଚାଳୀ ଚୌଡ୍ର ମାଗଧୀ ।

(ନାଟ୍ୟଶାସ୍ତ୍ର- ଭରତ)

କିନ୍ତୁ ଏହି ସବୁ ପ୍ରବୃତ୍ତିର ଲକ୍ଷଣ ସେ ତାଙ୍କ ନାଟ୍ୟଶାସ୍ତ୍ରରେ ବର୍ଣ୍ଣନା କରିନାହାନ୍ତି । କେବଳ ବିଭିନ୍ନ ଭୌଗଳିକ ଅଞ୍ଚଳର ଅମଳକ ଅଠର ଦୃଷ୍ଟିରୁ ଏ ଗୁଡ଼ିକର ନାମକରଣ କରାଯାଇଥିଲା । ଆବନ୍ତୀକୁ ପଶ୍ଚିମ ଭାରତର ପ୍ରବୃତ୍ତି ରୂପେ ଦାକ୍ଷିଣାତ୍ୟାକୁ ଦକ୍ଷିଣ ଭାରତର ପ୍ରବୃତ୍ତି, ଓଡ୍ରମାଗଧୀକୁ ଓଡ଼ିଶା ଓ ମଗଧ (ପୂର୍ବଭାରତ)ର ଏବଂ ପାଞ୍ଚାଳୀକୁ ମଧ୍ୟଦେଶର ପ୍ରବୃତ୍ତି ରୂପେ ଗ୍ରହଣ କରିଥିଲେ । ନୃତ୍ୟ ଉପରେ ଉଚ୍ଚାରଣ ବିଶେଷରୁ ଦୃଷ୍ଟିରୁ ବୃତ୍ତି ; ଏବଂ ଅଞ୍ଚଳର ଆଚାର ଦୃଷ୍ଟିରୁ ପ୍ରବୃତ୍ତିର ଉଲ୍ଲେଖ ଭରତଙ୍କ ନାଟ୍ୟଶାସ୍ତ୍ରରେ ସ୍ପର୍ଶ କରାଯାଇଥିଲା ।

ଏହି ଅଞ୍ଚଳର ଚର୍ଯା ଭୌଗଳିକ କାରଣରୁ ଭିତର ପ୍ରବୃତ୍ତି ଭାଗରେ ଏକ ସ୍ଥିର ନୃତ୍ୟ ରୂପ ଧାରଣ କଲା । ପ୍ରଥମାବସ୍ଥାରେ ଭୌଗଳିକତା ହିଁ ଏହାର ନିୟାମକ ହୋଇଥିଲା । ଯେତେବେଳେ ବଦଳି ଦେଶର ଲୋକମାନେ ବିବିଧ ରୀତି ପ୍ରୟୋଗ କରୁଥିଲେ, ତୌର୍ଯ୍ୟ କଳାମାନେ ଯୌଗିକୀରଣ

ପ୍ରଚଳନ ରହିଥିଲେ କିନ୍ତୁ ପରବର୍ତ୍ତୀ କାଳରେ ଏକ ନିର୍ଦ୍ଦିଷ୍ଟ ଅର୍ଥରେ ରୀତିର ପ୍ରୟୋଗ ଆରମ୍ଭ ହେଲା । ବର୍ଣ୍ଣନା ବା ରଚନା ପ୍ରସଙ୍ଗର ବୈଶିଷ୍ଟ୍ୟକୁ ଲକ୍ଷ୍ୟକରି ରୀତିର ନିର୍ଦ୍ଧାରଣ ଆରମ୍ଭ ହେଲା । ଯୁଦ୍ଧ ସଂଘର୍ଷ ଇତ୍ୟାଦି ରସର ଅବତାରଣା ପାଇଁ ଗୌଡ଼ୀ ରୀତିକୁ ଗ୍ରହଣ କରାଯାଉଥିଲା ଏବଂ ଶୃଙ୍ଗାରାଦି ବର୍ଣ୍ଣନା ପାଇଁ ବୈଦର୍ଭୀ ରୀତିର ପ୍ରାଧାନ୍ୟ ନିଆଯାଉଥିଲା । ପୁଣି ଯେଉଁ ଦେଶର କବି ହେଉନା କାହିଁକି, ତା' କାବ୍ୟର ରସାବତାରଣାରେ ଅନ୍ୟ-ଦେଶର ରୀତିକୁ ଅବଲମ୍ବନ କରୁଥିଲେ । କୁନ୍ତକଙ୍କ ପର୍ଯ୍ୟନ୍ତ ରୀତି ଏହି ଭୌଗଳିକତା ବା ଆଞ୍ଚଳିକତାର ସଂକୀର୍ଣ୍ଣ ଗଣ୍ଡି ଭିତରୁ ମୁକ୍ତି ଲାଭ ନ ଥିଲା । କୁନ୍ତକ ରୀତିକୁ କବି ସ୍ୱଭାବ ସହ ଏକାତ୍ମକ କଲେ । କବି ସ୍ୱଭାବ ସହିତ ସମ୍ପର୍କ ଅତି ଆନ୍ତରିକ । ତେଣୁ କବିର ଆତ୍ମା ଭଳି ତା'ର ରୀତି ଭୌଗଳିକତା ଉପରେ ନିର୍ଭରିତ ନୁହେଁ ବୋଲି ସେ ପ୍ରତିପାଦିତ କଲେ । ତେଣୁ ସେ ରୀତି ପାଇଁ ଭିନ୍ନ ଭିନ୍ନ ମାର୍ଗର ନିର୍ଦ୍ଦେଶ ଦେଲେ । ବୈଦର୍ଭୀ ରୀତି ପାଇଁ 'ସୁକୁମାର ମାର୍ଗ' ଗୌଡ଼ୀ ପାଇଁ 'ବିଚିତ୍ର ମାର୍ଗ' ଏବଂ ପାଞ୍ଚାଳୀ ପାଇଁ 'ମଧ୍ୟମ ମାର୍ଗ'ର ନାମୋଲ୍ଲେଖ କରିଥିଲେ । କାଳକ୍ରମେ ତାହା ମଧ୍ୟ ଲୁପ୍ତ ହୋଇଗଲା । ବାଣଭଟ୍ଟ ହର୍ଷ ଚରିତରେ ଭିନ୍ନ ଅଞ୍ଚଳରେ ପ୍ରଚଳିତ ଶୈଳୀ ରୀତିର ସୂଚନା ଦେଲେ । ତାଙ୍କ ମତରେ ଉତ୍ତର ଭାରତରେ ଶ୍ଳେଷ ପ୍ରଧାନ ରୀତି, ପଶ୍ଚିମ ଭାରତରେ ଅର୍ଥ ପ୍ରଧାନ, ଦକ୍ଷିଣ ଭାରତରେ ଉତ୍ପ୍ରେକ୍ଷାଦି ଅଳଙ୍କାର ପ୍ରଧାନ ଏବଂ ପୂର୍ବ ଭାରତରେ ଶବ୍ଦାଡମ୍ବର ପ୍ରଧାନ ରୀତିର ପ୍ରଚଳନ ସେ ଅନୁଭବ କଲେ । ପ୍ରାୟ ଖ୍ରୀଷ୍ଟୀୟ ୬ମ ଶତକ ପର୍ଯ୍ୟନ୍ତ ରୀତି ; ଏହି ଭୌଗଳିକତା ଓ ଆଞ୍ଚଳିକତାର ଉତ୍ଥାନ ପତନ

ବୈଦର୍ଭୀ ଓ ଗୌଡ଼ୀ ରୀତିର ଆଲୋଚନାରେ ପ୍ରାଧାନ୍ୟ ଲାଭ କରିଥିଲା । ଭଟ୍ଟ ଶଙ୍କୁ, ଦଣ୍ଡୀର ରୀତି ମଧ୍ୟ ଭଲ— ଏ କଥା ଦଣ୍ଡୀ ଅନୁଭବ କରୁଥିଲେ । ତେଣୁ ମାର୍ଗର ସ୍ପଷ୍ଟ ଭେଦ ପ୍ରକାର ତାଙ୍କ କାବ୍ୟାଦର୍ଶରେ ହୋଇଥିଲା । ଯଥା :— ଅସ୍ତ୍ୟନେକୋ ଗିରାଂ ମାର୍ଗଃ ସୂକ୍ଷ୍ମଭେଦଃ ପରସ୍ପରମ୍— ଦଣ୍ଡୀ ଗୁଣ ଓ ରୀତି ମଧ୍ୟରେ ଥିବା ସମ୍ବନ୍ଧକୁ ସ୍ଥାପିତ କଲେ । ଭରତ ପ୍ରସାଦାଦି ଗୁଣକୁ ଯେପରି କାବ୍ୟ ଗୁଣ ରୂପେ ସ୍ୱୀକାର କରିଥିଲେ ଦଣ୍ଡୀ ସେହି ଗୁଣକୁ ବୈଦର୍ଭୀ ମାର୍ଗର ପ୍ରାଣ ବୋଲି ଗ୍ରହଣ କରିଥିଲେ ।

"ଇତି ବୈଦର୍ଭ ମାର୍ଗସ୍ୟ ପ୍ରାଣା ଦଶଗୁଣାଃ ସ୍ମୃତାଃ" ତାଙ୍କ ମତରେ ବୈଦର୍ଭୀ ରୀତି କାବ୍ୟର ଆଦର୍ଶ ।

ଅଷ୍ଟମ ଶତକର ଶେଷ ଓ ନବମ ଶତକର ପ୍ରଥମ ଭାଗ ମଧ୍ୟରେ ଆଚାର୍ଯ୍ୟ ବାମନ ହିଁ ରୀତିବାଦର ପ୍ରତିଷ୍ଠା କରି ପାରିଥିଲେ । ସେ ତାଙ୍କର 'କାବ୍ୟାଲଂକାର ସୂତ୍ର'ରେ ରୀତିକୁ ଗୌରବ ପ୍ରଦାନ କଲେ । ତାଙ୍କର ଦୁଇଟି ଶ୍ଳୋକ ଅତି ମୂଲ୍ୟବାନ ବୋଲି ପରିଗଣିତ ହେଲା ।

"ରୀତିରାତ୍ମା କାବ୍ୟସ୍ୟ" ଓ "କାବ୍ୟଂ ଗ୍ରାହ୍ୟମ ଅଳଂକାରାତ୍"— ଆଦି ତାଙ୍କର ପ୍ରଧାନ ପ୍ରତିପାଦିତ ସୂତ୍ର । ସେ ରୀତିବାଦର ପ୍ରତିଷ୍ଠାତା । ତାଙ୍କ ମତରେ "ବିଶିଷ୍ଟ ପଦ ରଚନା ରୀତି : ବିଶେଷୋ ଗୁଣାତ୍ମା"— ଅର୍ଥାତ୍ ଅର୍ଥ ଗୁଣ ବିଶେଷ ବିଶିଷ୍ଟ ପଦରଚନା ହିଁ ରୀତି । ଏହି ପଦ ରଚନାର ବିଶେଷତା, ପ୍ରସାଦାଦି ଗୁଣରେ ନିହିତ ଥିବାରେ ନିର୍ଭର କରେ । ତେଣୁ ଶବ୍ଦ ଅର୍ଥ ଓ ଗୁଣର ସଂଯୋଗରେ ବିଶିଷ୍ଟ ପଦ ରଚନାକୁ ରୀତି ବୋଲି ବାମନାଚାର୍ଯ୍ୟ ଗ୍ରହଣ କରିଥିଲେ । ସେ 'ପାଞ୍ଚାଳୀ' ବୋଲି ଏକ

ନୂତନ ରୀତିର ନାମୋଲ୍ଲେଖ କରିଥିଲେ । ବୈଦର୍ଭୀ ଦଶଟି ଗୁଣ ଯୁକ୍ତ । କିନ୍ତୁ କାନ୍ତି, ଓଜଃ ବ୍ୟତୀତ ଅନ୍ୟ ଆଠଟି ଗୁଣ ଯୁକ୍ତ ରଚନାକୁ 'ପାଞ୍ଚାଳୀ ରୀତି' ବୋଲି ବାମନାଚାର୍ଯ୍ୟଙ୍କ ଅଭିହିତ କରିଥିଲେ । ତାଙ୍କ ସମୟରେ ରୀତିର ସଂଖ୍ୟା ବଢ଼ିଯାଇଥିଲା ଏବଂ ଅଳଙ୍କାର ଶାସ୍ତ୍ରକୁ ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ ଆଦି ତିନି ଗୋଟି ରୀତିର ପ୍ରବେଶ ସେ ପର୍ଯ୍ୟନ୍ତ ସମ୍ଭବ ହୋଇଥିଲା ।

ନବମ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଧ୍ୱନ୍ୟାଲୋକକାରିକା ପ୍ରଣେତା ଆନନ୍ଦ ବର୍ଦ୍ଧନ ; ଗୁଣ ଓ ସଂଘଟନା ପ୍ରସଙ୍ଗରେ ରୀତିର ସୂଚନା ଦେଲେ । ତାଙ୍କ ଅଳଙ୍କାର ଶାସ୍ତ୍ରର ତୃତୀୟ ଉଦ୍ୟୋତରେ ଏଇ ଗୁଣ ଓ ସଂଘଟନାର ବିଚାର କରାଯାଇଛି । ସେଥିରେ ସେ "ପଦ ସଂଘଟନାକୁ ରୀତିରୂପେ ସୂଚିତ କରନ୍ତି । ଆନନ୍ଦ ବର୍ଦ୍ଧନଙ୍କ ମତରେ ରୀତି ରସାଶ୍ରୟୀ ଓ ତାହିତ ଗୁଣ ଉପରେ ଅବଲମ୍ବିତ । କାବ୍ୟର ଆତ୍ମା ରୂପେ ରସାଦିର ଉତ୍କର୍ଷ ସାଧକ ଧର୍ମ ହିଁ ରୀତି । ସେ କୌଣସି ନୂତନ ଶ୍ରେଣୀୟ ରୀତିର ସୂଚନା ଦେଇନାହାନ୍ତି ।

ଆନନ୍ଦ ବର୍ଦ୍ଧନଙ୍କ ପରବର୍ତ୍ତୀ କାଳରେ ରୁଦ୍ରଟ (ନବମ ଶତକର ଚତୁର୍ଥ ପାଦ— ଦଶମ ଶତକ) ବୈଦର୍ଭୀ ; ଗୌଡ଼ୀ ଓ ପାଞ୍ଚାଳୀ ରୀତିସହ ଲାଟିୟା ରୀତିକୁ ଯୋଗ କଲେ । ବୈଦର୍ଭୀକୁ ସେ ଶ୍ରେଷ୍ଠ ବୋଲି ସ୍ୱୀକାର କଲେ । କିନ୍ତୁ ତାଙ୍କର ରୀତି ବିଚାର ଦଣ୍ଡୀ, ବାମନଙ୍କ ପରି ଗୁଣ ଭିତ୍ତିକ ନୁହେ । ମୁଖ୍ୟତଃ ସମାସ ଭିତ୍ତିକ । ଯେପରି କି ଦୁଇ ତିନୋଟି ସମାସ ଥାଇ ପାଞ୍ଚାଳୀ, ପାଞ୍ଚ ସାତୋଟି ସମାସରେ ଗୌଡ଼ୀ ରୀତିର ସୃଷ୍ଟି ; ବୈଦର୍ଭୀ ସଂପୂର୍ଣ୍ଣ ରୂପେ ସମାସ ଶୂନ୍ୟା । ତେଣୁ ତାହା ଅଦ୍ୱିତୀୟା ରୀତି । ସୁତରାଂ

ଅଳଙ୍କାର ଶାସ୍ତ୍ରର ଜଟିଳତାରେ ରୁଦ୍ରଟଙ୍କ ସମ୍ବୃଦ୍ଧି ବିଷୟରେ ସଂଖ୍ୟା ଶ୍ରମରୁ ଗୁରୁତ୍ୱ ବର୍ଦ୍ଧିତ ହୋଇଥିଲା ।

ଅଳଙ୍କାରିକ ରାଜଶେଖରଙ୍କ ଅଭ୍ୟୁଦୟ, (ଖ୍ରୀଷ୍ଟାବ୍ଦ ୮୮୦-୯୨୦ ଆନୁମାନିକ ) ବେଳକୁ ରୀତିର ସଂସାର ବଢ଼ିଗଲାଣି । କର୍ପୂର ମଞ୍ଜରୀ, ବାଳ ରାମାୟଣ ଇତ୍ୟାଦିର ପ୍ରଣେତା ରାଜଶେଖର ତାଙ୍କ ଅଳଙ୍କାର ଗ୍ରନ୍ଥ 'କାବ୍ୟ ମୀମାଂସା'ରେ ରୀତିର ଉଲ୍ଲେଖ କରିଥିଲେ । କାବ୍ୟ ମୀମାଂସା ଅଠରଟି ଅଧ୍ୟାୟରେ ବିଭକ୍ତ । ସେଥି ମଧ୍ୟରୁ କେବଳ 'କବି ରହସ୍ୟ' ନାମକ ଭୂମିକାଟି ହିଁ ଅଦ୍ୟାବଧି ଆବିଷ୍କୃତ । ଏହା ସମସ୍ତ ଗ୍ରନ୍ଥର ସୂଚୀ । କିନ୍ତୁ ସେଥି ବସ୍ତୁର ବିନ୍ୟାସ ଏପରିଭାବରେ କରାଯାଇଛି ଯେ ଏହାହିଁ ସତେ ଯେପରି ପୂର୍ଣ୍ଣ ଗ୍ରନ୍ଥର ମର୍ଯ୍ୟାଦା ଲାଭ କରିଛି ।

ରାଜଶେଖର ରସବାଦୀ ଓ ଭରତ ପନ୍ଥୀ । କାବ୍ୟରେ ଧ୍ୱନ୍ୟାତ୍ମାବାଦକୁ ରାଜଶେଖର ସ୍ୱୀକାର କରନ୍ତି । ସେ ରୀତି ନୈତିପୁର ପକ୍ଷପାତୀ । ତାଙ୍କ ମତରେ ରୀତି ତିନୋଟି । ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ । ତଥାପି ସେ ମାଗଧୀ ରୀତିକୁ ତାଙ୍କ ଶାସ୍ତ୍ରରେ ସ୍ଥାନ ଦେଇଛନ୍ତି— ତାଙ୍କ ମତରେ 'ସରସ୍ୱତୀ ତନୟ' କାବ୍ୟ ପୁରୁଷ ; "ସାହିତ୍ୟ ବିଦ୍ୟା" ତାଙ୍କର ବଧୂ । ଶବ୍ଦାର୍ଥ କାବ୍ୟ ପୁରୁଷର ଶରୀର ସଂସ୍କୃତ ମୁଖ, ପ୍ରାକୃତ ବାହୁ— ସମତା, ପ୍ରସାଦ, ମାଧୁର୍ଯ୍ୟ, ଉଦାରତା, ଓଜସ୍ୱିତା ଆଦି ଗୁଣ ରସ ଆତ୍ମା, ଅନୁପ୍ରାସ ଉପମାଦି ଅଳଙ୍କାର ।

"ଗୁଣବତ୍ ଅଳଂକୃତଂ ବାକ୍ୟଂ କାବ୍ୟଂ"ହିଁ ତାଙ୍କର କାବ୍ୟ ଲକ୍ଷଣ । ତାଙ୍କ ମତରେ "ବଚନ ବିନ୍ୟାସ କ୍ରମୋ ରୀତିଃ"— ଅର୍ଥାତ୍ ବଚନ ବିନ୍ୟାସ କ୍ରମହିଁ ରୀତି । ଏହା ପ୍ରାୟ ବାମନ ପନ୍ଥ ଧର୍ମୀ ।

ଦଶମ ଶତାବ୍ଦୀର ଅଖ୍ୟାତ ଆଳଂକାରିକ କୁନ୍ତକ ତାଙ୍କ 'ବକ୍ରୋକ୍ତି ଜୀବିତ' ଗ୍ରନ୍ଥରେ ରୀତିକୁ ନୂତନ ରୂପରେ ବ୍ୟାଖ୍ୟା କରିଥିଲେ । ତାଙ୍କର ଏହି ଦୃଷ୍ଟିଭଙ୍ଗୀଟି ନିଶ୍ଚୟରେ ମୌଳିକ ହୋଇଛି । ପ୍ରଥମ ଉନ୍ମେଷରେ ଆଳଂକାରିକ କୁନ୍ତକ 'କାବ୍ୟର ମାର୍ଗ' ବସ୍ତୁର ପ୍ରସଙ୍ଗରେ ତିନୋଟି ମାର୍ଗ (ରୀତି)ର ନାମ ଉଲ୍ଲେଖ କରିଛନ୍ତି— ବୈଚିତ୍ର୍ୟ ମାର୍ଗ, ସୁକୁମାର ମାର୍ଗ ଓ ମଧ୍ୟମ ମାର୍ଗ । ତାଙ୍କ ମତରେ କବି ସ୍ୱଭାବର ରୀତିର ଜନ୍ମ । କୌଣସି ପ୍ରାଦେଶିକତାର ସଂକୀର୍ଣ୍ଣ ପରିଧିରେ ରୀତିର ବନ୍ଧନ ଅତ୍ୟନ୍ତ ହାସ୍ୟାସ୍ପଦ । "ବକ୍ରୋକ୍ତି ହିଁ କାବ୍ୟର ଆତ୍ମା ; ରସ, ଧ୍ୱନି, ରୀତି— ପ୍ରତ୍ୟେକ ବକ୍ରୋକ୍ତିର ପରିପାଟୀ । କାବ୍ୟର ପ୍ରାଣ ହିଁ ବକ୍ରୋକ୍ତି ବୋଲି ତାଙ୍କର ମତ । ରୀତି ସଂପର୍କରେ ସେ ମାର୍ଗର ଅନୁମୋଦକ ଏବଂ ତାଙ୍କ ଦୃଷ୍ଟିରେ ବିଚିତ୍ର, ମଧ୍ୟମ, ସୁକୁମାର ହିଁ ତିନୋଟି ଶ୍ରେଷ୍ଠ କାବ୍ୟ ମାର୍ଗ ।

ଏକାଦଶ ଶତକ— ଦ୍ୱାଦଶ ଶତକ ମଧ୍ୟରେ ଅଳଂକାରିକ ଭୋଜଦେବ 'ସରସ୍ୱତୀ କଣ୍ଠାଭରଣ' ଗ୍ରନ୍ଥରେ ରୀତିର ଉଲ୍ଲେଖ କରିଥିଲେ ଏବଂ ରୀତିକୁ ଏକ ଅଳଂକାର ବୋଲି ଅଭିହିତ କରିଥିଲେ । ସେ ଆବନ୍ତୀକୁ ଗୋଟିଏ ରୀତି ହେବାରୁ ଗ୍ରହଣ କରି ରୀତିର ସଂଖ୍ୟା ଛଅ କଲେ । ମମ୍ମଟ ଭଟ୍ଟ ତାଙ୍କର ସମସାମୟିକ, ସେ ତାଙ୍କର ଅଳଙ୍କାର ଗ୍ରନ୍ଥ 'କାବ୍ୟ ପ୍ରକାଶ'ର ନବମ ଉଲ୍ଲାସରେ ରୀତିର ପରିଭାଷାକୁ ପରିବର୍ତ୍ତନ କରି ତାହାକୁ କେବଳ ବୃତ୍ତି ରୂପରେ ଆଖ୍ୟାୟିତ କରିଥିଲେ ଏବଂ ବୃତ୍ତି ତ୍ରୟ— ପରୁଷା, କୋମଳା, ଉପନାଗରିକା ଆଦିର

ଆଲୋଚନା କରିଥିଲେ । ଦଣ୍ଡୀ ତାଙ୍କ ପୂର୍ବବର୍ତ୍ତୀ ଆଳଂକାରିକମାନଙ୍କର ରୀତି ନାମଟିକୁ ମଧ୍ୟ ସ୍ୱୀକାର କରିଥିଲେ । ରୀତି ତାଙ୍କ ମତରେ ସଂପୂର୍ଣ୍ଣ ରୂପେ ଏକ ବର୍ଣ୍ଣ ବ୍ୟାପାର, ବର୍ଣ୍ଣସଂଘଟନା ବା ରଚନା ହିଁ ରୀତିର ନିୟାମକ । ଗୁଣାନୁସାରୀ ବର୍ଣ୍ଣର ପ୍ରୟୋଗ ହୋଇଥାଏ । ତେଣୁ ରୀତି ତାଙ୍କ ଦୃଷ୍ଟିରେ ଗୁଣାଶ୍ରୟୀ ।

ତ୍ରୟୋଦଶ ଶତକରେ ଉତ୍କଳୀୟ କବି ଓ ଆଳଂକାରିକ ଜୟଦେବ ତାଙ୍କର ଅଳଙ୍କାର ଗ୍ରନ୍ଥ 'ଚନ୍ଦ୍ରାଲୋକ'ରେ ରୀତିର ଉଲ୍ଲେଖ କରିଥିଲେ । ଏହି ଗ୍ରନ୍ଥଟି ଦଶଟି 'ମୟୂଖ'ରେ ବିଭକ୍ତ ହୋଇଥିଲା । ଷଷ୍ଠ ମୟୂଖରେ ରସ, ରୀତି, ଭାବ ଓ ବୃତ୍ତିର ସ୍ୱରୂପ ଉପସ୍ଥାପନ କରିଥିଲେ । ଏହାଙ୍କ ପରେ ପରେ 'ଏକାବଳୀ' ପ୍ରଣେତା ବିଦ୍ୟାଧର ଏବଂ 'ପ୍ରତାପରୁଦ୍ର ଯଶୋଭୂଷଣ' ପ୍ରଣେତା ବିଦ୍ୟାନାଥ ଉଭୟେ ଆଳଂକାରିକମାନେ ଗୁଣ ଓ ରୀତିର ସଂଜ୍ଞା ସ୍ୱୀୟ ସ୍ୱୀୟ ଗ୍ରନ୍ଥରେ ଦେଇଥିଲେ । 'ସାହିତ୍ୟ ରତ୍ନାକରର ପ୍ରଣେତା ଧର୍ମସୂରି ( ୧୫ଶ ଶତାବ୍ଦୀ ) ମଧ୍ୟ ତାଙ୍କ ଗ୍ରନ୍ଥର ନବମ ତରଙ୍ଗରେ ରୀତିଶଯ୍ୟାର ଉଲ୍ଲେଖ କରିଥିଲେ ।

ଚତୁର୍ଦ୍ଦଶ ଶତକରେ ଉତ୍କଳୀୟ ପଣ୍ଡିତ ବିଶ୍ୱନାଥ କବିରାଜ 'ସାହିତ୍ୟ ଦର୍ପଣ'ରେ ପୂର୍ବସୂରୀମାନଙ୍କର ସମସ୍ତ ତତ୍ତ୍ୱର ଅନୁଧ୍ୟାନ କରି ରୀତିକୁ ଚତୁର୍ଭାଗରେ ବିଭକ୍ତ କରିଥିଲେ— ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲାଟୀ । ବାକ୍ୟଂ ରସାତ୍ମକଂ କାବ୍ୟଂ ହିଁ ତାଙ୍କର ପ୍ରଧାନ ମତବାଦ । ତାଙ୍କ ମତରେ ଗୁଣ ଓ ରୀତି ଅଳଂକାର ହିଁ କାବ୍ୟ ଉତ୍କର୍ଷ ବିଧାନର ହେତୁ । ବିଶ୍ୱନାଥଙ୍କ ମତ ଅଳଙ୍କାର ଶାସ୍ତ୍ରର ଅଧୁନାତନ ପ୍ରତିଷ୍ଠିତ । ସେହି ଦୃଷ୍ଟିରୁ ରୀତିଭେଦ ଓ ରୀତିସ୍ୱରୂପ ନିର୍ଦ୍ଦେଶ ଏଠାରେ ପ୍ରଦତ୍ତ ।

ଅଳଙ୍କାର ଶାସ୍ତ୍ରର କମିକଚାନରେ ରୀତିର ଲକ୍ଷ ସେକଳଙ୍କେ ଏହା ସ୍ଥୂଳତର ସ୍ତରର ସେ ସଂସ୍କୃତ ପ୍ରାଧାନ । ରୀତି ସମ୍ପର୍କରେ ଅନେକ ମତ ତଥା ଧାରଣା ଉପସ୍ଥାପିତ ହୋଇଛି । ରୀତିର ନକସ କୃତ୍ରିମ ବସ୍ତୁ ହୋଇ ନ ଥିବ । ତଥାପି ସାଧାରଣ ଅର୍ଥରେ ରୀତି କଣ ?

ଶବ୍ଦାର୍ଥ ଶରୀର, ରସ ତ ତା'ର ଆତ୍ମା । କାବ୍ୟ ଆତ୍ମାଭୂତ ରସାଦିର ଶୋଭାବର୍ଦ୍ଧକ ଓ ପ୍ରଭାବ ଉତ୍ପାଦକ ବିଶିଷ୍ଟ ପଦ ରଚନା ହିଁ ରୀତି । ତାହାର ବିଶିଷ୍ଟ ପଦରଚନା ବା ବିଶିଷ୍ଟ ପଦ ସଂଘଟନା ନାମରେ ପରିଚିତ । କେତେକ ଏହି ରୀତିର ବିଶିଷ୍ଟତା ଗୁଣ ଉପରେ ନିର୍ଭର କରେ । ଗୁଣଯୁକ୍ତ ପଦ ସଂଯୋଜନା ହିଁ ରୀତି । ଅନ୍ୟ ଭାଷାରେ ରୀତିର ସ୍ୱରୂପ ଏପରି କହାଯାଇଛି ।

"ରୀତ୍ୟେ ସ୍ୱରୂପେ ଗୁଣା ବିଶେଷା ଅନୟା ଭବେ ରୀତିଃ"-- ଅର୍ଥାତ ଯାହାଦ୍ୱାରା ଗୁଣ ବିଶେଷ ସୃଷ୍ଟି ହୁଏ ତାହାହିଁ ରୀତି ।

ସେ ଯାହା ହେଉନା କାହିଁକି କାବ୍ୟବସ୍ତୁର ସୌନ୍ଦର୍ଯ୍ୟ ପାଞ୍ଚଟି ଉପକରଣ ଉପରେ ହିଁ ଆଧାରିତ – ରୀତି, ଗୁଣ, ଅଳଙ୍କାର, ରସ ଓ ଧ୍ୱନି । ପ୍ରଥମ ତିନୋଟି ବାହ୍ୟିକ ଉପକରଣ ଓ ଶେଷ ଦୁଇଟି ଅନ୍ତର୍ଗତ ଉପକରଣ । କୌଣସି ସମୟରେ ଶବ୍ଦ ଓ ଅର୍ଥର ଗୌରବକୁ ଗୌଣ କେବଳ ରସକୁ ପ୍ରାଧାନ୍ୟ ଦେଉଥିଲେ । କେତେକ ସମୟରେ ରୀତି ପ୍ରଧାନ ସମସ୍ତ ରୂପ ପାଇଥିଲା ଏବଂ ସେ ଯୁଗର ଲେଖକମାନଙ୍କ ରୀତିବଦ୍ଧ ସେମାନଙ୍କର କାବ୍ୟକୁ ରୀତି କାବ୍ୟ ରୂପେ ଗ୍ରହଣ କରାଯାଇଥିଲା । ଓଡ଼ିଆ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ବିରଳ ନୁହେଁ । ଭଞ୍ଜ ଓ ତାଙ୍କ ପରବର୍ତ୍ତୀ କାଳ— ରୀତି କାଳ ରୂପେ ପରିଚିତ । ଭଞ୍ଜ ଓଡ଼ିଆ ସାହିତ୍ୟର ରୀତିବାଦୀ କବି ।

ତାଙ୍କର ପ୍ରତ୍ୟେକ କାବ୍ୟ ରୀତି ମହତ୍ତ୍ୱର ଏକ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତେବେ ଓଡ଼ିଆ ସାହିତ୍ୟରେ ଏହି ରୀତି ଦୃଷ୍ଟାନ୍ତର ବୈଦିନ୍ୟ ଅନୁଭୂତ ହୁଏ ନାହିଁ । ବଡ଼ଭନ୍ତ ରୀତିର ସଂଜ୍ଞାନୁଯାୟୀ ସ୍ୱାଭାବିକ ଉଦାହରଣ ସର୍ବଦା ପରିଲକ୍ଷିତ ହୋଇଥାଏ । ପ୍ରାଚୀନ କିମ୍ବା ନବୀନ ସାହିତ୍ୟରେ ଏହାର ଉଦାହରଣ ଦୁର୍ଲଭ ନୁହେଁ ।

## ରୀତିର ପ୍ରକାର ଭେଦ :—

ସାଧାରଣତଃ ରୀତି ଗ୍ରନ୍ଥଗତରେ ଅଳଙ୍କାର ଶାସ୍ତ୍ରରେ ଆଲୋଚିତ ହୋଇଥାଏ । ସେ ସମୁଦାୟ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲୌଟିଆ ରୀତି ନାମରେ ପରିଚିତ । ବଡ଼ଭନ୍ତ ରୀତି ବିଭିନ୍ନ ଗୁଣକୁ ଆଶ୍ରୟ କରି ରହିଥାଏ ।

## ବୈଦର୍ଭୀ :—

ଏହା ଏକ ଶ୍ରେଷ୍ଠ ରୀତି ବୋଲି ସମସ୍ତେ କହନ୍ତି । ଶ୍ଳେଷ, ପ୍ରସାଦ, ସମତା, ମାଧୁର୍ଯ୍ୟ ଗୁଣ ଆଦି ଦଶବିଧ ଗୁଣ ଏଥିରେ ପ୍ରତିଫଳିତ ହୋଇଥାଏ । ପ୍ରଧାନତଃ ଏହା ମାଧୁର୍ଯ୍ୟ ଗୁଣକୁ ବିଶେଷ ଭାବରେ ଆଶ୍ରୟ କରିଥାଏ । ଶୃଙ୍ଗାରବାହୁଳ୍ୟକାବ୍ୟ ରଚନାରେ ଏହି ରୀତି ଅବଲମ୍ବିତ ହୋଇଥାଏ । ଏଥିରେ ସୁକୁମାର ବର୍ଣ୍ଣ, ଅଳ୍ପ ସମାସ ବା ଅସମାସ ଯୁକ୍ତ ପଦ; ମାଧୁର୍ଯ୍ୟ ଗୁଣ ପ୍ରକାଶକ ବର୍ଣ୍ଣ ବିନ୍ୟାସ ( ଯଥା- 'ଟ' ବର୍ଗର ବ୍ୟତୀତ ବର୍ଣ୍ଣ ମୂର୍ଦ୍ଧନ୍ୟ, ବର୍ଗର ୫ମ ବର୍ଣ୍ଣ, କିମ୍ବା ବର୍ଗର ୧ମ, ୨ୟ, ୩ୟ, ୪ର୍ଥ ବର୍ଣ୍ଣ ସହିତ ୫ମ ବର୍ଣ୍ଣର ସଂଯୋଗ (ଯେପରି ଙ୍+ଗ=ଙ୍ଗ) ହୋଇଥିଲେ ବା ରେଫ, 'ର'କାର ଯୁକ୍ତ ପଦ ବିନ୍ୟାସ ହୋଇଥିଲେ ବା ର ଓ ଣ ଲଘୁ

ଭାବରେ ଉଚ୍ଚାରିତ ହେଉଥିଲେ ) ଏଥିରେଁ କରାଯାଇଥାଏ ।
ତା’ଛଡ଼ା କରୁଣ, ଶୃଙ୍ଗାର ଓ ଶାନ୍ତର ଭାବ ଅବତାରଣା ମଧ୍ୟ
କରାଯାଇଥାଏ ।

ଉଦାହରଣ :—

(କ) ଘଳୁଛୁ ନୁହଇ ମାର        ନାହିଁ ଫୁଲ ଧନୁଶର
ସୁଧାକର ନୁହେଁ ତହିଁ କଳଙ୍କ ଅଛୁ
ଆଉ ଦେବତା ମାନଙ୍କୁ        କାଂପିଁ ଆଣିବା ମନକୁ
ମୋହର ସୁହୃତ ଏ ପ୍ରରୁଷ ହୋଇଛୁ
ମୋର ପୂର୍ଣ୍ଣ ସୁକୃତ କେତେ :
ଏମନ୍ତ ଶୋଭି ଜାତ ହେବା ଜଗତେ ।
(ଲାବଣ୍ୟବତୀ)

(ଖ) ମଗଧେ ଥିଲେ,        ଅଙ୍ଗ ବଙ୍ଗେ ପୁଣି
ଦେଖିଛୁ କେତେ ସୁନ୍ଦରୀ,
ଏ ଯୋଷା-ଚରଣ—        ଦଶା ପଥରକୁ
ନୋହିବେଟି କେହୁ ସର ।
(ଯଯାତି କେଶରୀ)

ଗୌଡ଼ୀ :—

ଏଥିର ଓଜଃ ପ୍ରକାଶକ ପୌରୁଷ ବର୍ଣ୍ଣର ପ୍ରୟୋଗ, ଦୀର୍ଘ
ସମାସ ସମାବେଶ ଏବଂ ବୀର, ରୌଦ୍ର, ଭୟାନକ ଅଦ୍ଭୁତ ଆଦି
ରସର ଅବତାରଣା କରାଯାଇଥାଏ । ସଂଯୁକ୍ତ ଓ ମହାପ୍ରାଣ ବର୍ଣ୍ଣର
ଶବ୍ଦାବଳୀ-ବିନ୍ୟାସ ମଧ୍ୟ ହୋଇଥାଏ ।

ଉଦାହରଣ :—

(କ) ଦିଗ୍‌ବିଜୟୀ ଆର୍ଯ୍ୟ ସିଂହ ଔରସେ ଜନମି
ହେଲ କି ଅକ୍ଷମ, ଅହା, ନିଜସ୍ୱ ରକ୍ଷଣେ ?
ଦ୍ରୁମ-ଉର୍ଜସ୍ୱଳ-ଭୀମ-ହିମାଦ୍ରି ପ୍ରାଚୀରେ
ଦୁର୍ଗମ ଭାରତ ଦୁର୍ଗ କାପୁରୁଷ- ହାତେ
କେ ଉହ୍ୱବ ମୋତେ, କହିଁ ଅର୍ପିଲେ ବିଧାତା !
ମହାଯାତ୍ରା- ସପ୍ତମସର୍ଗ)

(ଖ) ଶ୍ୱେତମଣି ଶିଳା ଦ୍ରୋଣି ବାହିନୀ ନର୍ମଦା
ତୀରବନେ ଅନୁକ୍ଷଣେ ମୃଗୟା ବିନୋଦ
ଆସକ୍ତ ଅମିତ୍ରଚ୍ଛେଦ ଚେଦ ମହୀଶ୍ୱରେ ।
(ମହାଯାତ୍ରା- ରାଧାନାଥ)

ପାଞ୍ଚାଳୀ:—

ଏହା ବୈଦର୍ଭୀ ଓ ଗୌଡ଼ୀ ରୀତିର ସମ୍ମିଶ୍ରଣରେ ସୃଷ୍ଟ । ଏହା ସମାସ ଯୁକ୍ତ ଏବ ଓଜଃ ମାଧୁର୍ଯ୍ୟ ଗୁଣ ରହିତ ରଚନା । କିନ୍ତୁ ଭୋଜରାଜଙ୍କ ମତରେ ଏହା ଓଜଃଗୁଣ ଯୁକ୍ତ ।

ଉଦାହରଣ :—

(କ) କୁଟିଳ କୁନ୍ତଳା କାମକେଳି କଳା
କୁଶଳା କମଳ ବଦନା
କରୀନ୍ଦ୍ର ଗମନା, କର କୁମ୍ଭସ୍ତନା
କୁନ୍ଦ କଳିକାତ ରଦନା

କମ୍ବୁକଣ୍ଠିନୀ ବନ୍ଧୁଲି ଦଶନ ରସନା
କେଶରୀ ମଧ୍ୟମା, ମହାସୁଖ ସୀମା
ଭଜପେପୁ କ୍ଷୀଣ ବସନା ।

(ରସକଲ୍ଲୋଳ)

## ଲାଟିୟା :

ଏହା ମାଗଧୀ ଓ ପାଞ୍ଚାଳୀ ରୀତିର ମଧ୍ୟବର୍ତ୍ତୀ ରଚନାରେ ପ୍ରତିଫଳିତ ଏବଂ ମୃଦୁ ପଦଯୁକ୍ତ ସମାସ ଦ୍ୱାରା ମନୋହର ଓ ପାଞ୍ଚାଳୀ- ଗୌଡ଼ୀ ସନ୍ଧି ସ୍ଥଳରେ ସୃଷ୍ଟ ।

ଉଦାହରଣ :—

(କ) ଅରେବାବୁ ! ଶ୍ୟାମଘନ     ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇଁ ବଞ୍ଚିବ
ହେବ ଦିଗନ୍ତ ଶୂନ୍ୟ,     ଅସ୍ଥିର ହେବ ଜୀବନ
କିଶି ଦିବସରେ ଫୁରୁଥିବ ରେ ଜୀବଧନ

(ମଥୁରାମଙ୍ଗଳ—ଭକ୍ତଚରଣ)

(ଖ) ଧୀରେ ସେନ କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ସେନା ଭକ୍ତଚନ୍ଦ୍ର ମାତ,
ମୋ! କଳା ମାଣିକ ରେ
ନିଧନ ସଙ୍ଗାଳି ମୋର ଦରିଦ୍ର ପସରା
ଅନ୍ଧର ଲଉଡ଼ି ବାଳୁ ହୃଦ ଉନ୍ନିହାସ
କଳା ମାଣିକ ରେ ।

(ବଦରଗ୍‌ଧ ଚନ୍ଦ୍ରମଣି — ଅଭିମନ୍ୟୁ)

# ଗୁଣ : ଏକ ଆଲୋଚନା

୪

କାବ୍ୟର ଉତ୍କର୍ଷ ବିଧାନ ସାଧାରଣତଃ ରସ, ଧ୍ୱନି, ଗୁଣ ଓ ଅଳଙ୍କାର ଉପରେ ନିର୍ଭର କରେ । ଅନେକଙ୍କ ମତରେ ରସ କାବ୍ୟର ଆତ୍ମା । ଗୁଣ ରସର ସ୍ଥାୟୀଧର୍ମ ଓ ରସ ସହିତ ଗୁଣର ସ୍ଥିତି ଅଚଳ । ମମ୍ମଟ ଉକ୍ତ ଏହି ମତର ଉଦ୍‌ଗାତା । ତାଙ୍କ ଭାଷାରେ— "ଯେ ରସସ୍ୟାଙ୍ଗିନୋ ଧର୍ମାଃ ଶୌର୍ଯ୍ୟାଦୟଶ୍ଚ ଇବାତ୍ମନଃ

ଉତ୍କର୍ଷ ହେତବଃ ତେସ୍ୟୁ ଅଚଳସ୍ଥିତୟୋ ଗୁଣାଃ ।

ଅର୍ଥାତ୍— ଗୁଣ ରସର ଧର୍ମ, ରସରେ ଗୁଣର ସ୍ଥିତି ନିତ୍ୟ ଏବଂ ରସର ଉତ୍କର୍ଷ ଗୁଣାଶ୍ରୟୀ ।"

ସାଧାରଣରେ ମଣିଷ ଶରୀରସ୍ଥ ଚେତନ ଆତ୍ମାକୁ ବୀରତ୍ୱ, ଉଦାରତା ଆଦି ଆତ୍ମଗତ ଗୁଣ ଯେପରି ଉତ୍କୃଷ୍ଟ କରେ କାବ୍ୟ ଶରୀରରେ ପ୍ରାଣ ଭୂତରସକୁ ସେହିପରି ମାଧୁର୍ଯ୍ୟ ପ୍ରସାଦ ଆଦି ଗୁଣ ସୁଶୋଭିତ କରେ । ତେଣୁ ବୋଧହୁଏ ଗୁଣ, ରସର ଧର୍ମ ଓ ତାର ଅନ୍ତରଙ୍ଗ ବସ୍ତୁ । ଅଳଙ୍କାର ରସର ଅସ୍ଥାୟୀ ଧର୍ମ ହୋଇ ଥିବାରୁ ତାହା ଏକ ବହିଃରଙ୍ଗ ପଦାର୍ଥ ।

କୌଣସି ନାୟିକାର ଅଙ୍ଗ ବୈଚିତ୍ର୍ୟ ଅଳଂକରଣ ହେତୁ ପ୍ରଭାବିତ ହୋଇପାରେ ମାତ୍ର ତାର ଆତ୍ମାରେ ଉତ୍କର୍ଷ ବିଧାୟକ ଧର୍ମ ନ ଥିଲେ ସେ ପଳାଶର ମୂଲ୍ୟହୀନତା ଲାଭ କରେ । ବହୁଃ

ତାଙ୍କୁ ଶୋଭାମଣ୍ଡିତ କଲେ କଣ ହେବ ? ଅନ୍ତଃରଙ୍ଗ ବିଶୋଭନ ତବ ସବୁକିଛି, ତବ ସୂକ୍ଷ୍ମମାନ । ତେଣୁ ଅଗ୍ନି ପୁରାଣରେ କୁହାଯାଇଛି :—

"ବପୁଷ୍ୟ ଲଳିତେ ସ୍ତ୍ରୀଣାଂ ହାରୋ ଭାରାୟତେ ସ୍ତ୍ରୀଣାଂ"

ଉତ୍ସର୍ଗ ସୁଷମା ନ ଥାଇ ଅ-କଳିତ ନାରୀ ଦେହରେ ହାରର ଭୂଷଣ ଭାର ଭଳି ବୋଧହୁଏ । ଗୁଣ ଓ ଅଳଙ୍କାର ଉଭୟର ସମ୍ମିଶ୍ରଣରେ ପ୍ରାକୃତିକ ସୌନ୍ଦର୍ଯ୍ୟ ବିକଶିତ ହୁଏ । ମାନବ ଜୀବନ କ୍ଷେତ୍ରରେ ଏହା ଯେପରି ଏକ ସତ୍ୟତା ; କାବ୍ୟ ଜୀବନ ସମ୍ପର୍କରେ ଏହା ମଧ୍ୟ ଏକ ନିର୍ଭୁଲ ବାସ୍ତବକତା ।

## ଗୁଣ ଓ ଅଳଙ୍କାର :—

ଏମାନେ ପ୍ରତ୍ୟେକ କାବ୍ୟ ଶୋଭା ବର୍ଦ୍ଧକ ବସ୍ତୁ । ମାତ୍ର ଏକ ନୁହନ୍ତି ; ଭିନ୍ନ । ଯାହା ଗୁଣ— ତାହା ଅଳଙ୍କାର ନୁହେଁ । କାରଣ ସାଧାରଣ ଅର୍ଥରେ ଦେଖିଲେ ମନେହୁଏ ଗୁଣ ଆତ୍ମା ସହିତ ସଂପୃକ୍ତ । କିନ୍ତୁ ଅଳଙ୍କାର ଶରୀର ସହ ସମ୍ବନ୍ଧାନ୍ବିତ ତେଣୁ ଉଭୟ ଅଭିନ୍ନ କିପରି ? ମାତ୍ର ଭାରତୀୟ ଅଳଙ୍କାର ଶାସ୍ତ୍ରରେ ଗୁଣ ଓ ଅଳଙ୍କାର ମଧ୍ୟରେ ଅନେକ ବାଦ-ବିସମ୍ବାଦ ପ୍ରଚଳିତ ।

କେତେକ ଅଭେଦବାଦୀ ଆଳଂକାରିକ ଗୁଣ ଓ ଅଳଙ୍କାର ମଧ୍ୟରେ କୌଣସି ଭେଦ ନିର୍ଦ୍ଦେଶ ନ କରି ସେମାନଙ୍କୁ ଅଭିନ୍ନ ରୂପେ ପ୍ରତିପାଦିତ କରିଥାନ୍ତି । ସେମାନଙ୍କ ମଧ୍ୟରେ ଭାମହ ଓ ଉଦ୍ଭଟ ପ୍ରଧାନ । ଏହି ଅଭେଦବାଦୀ ଆଳଂକାରିକ ମାନଙ୍କ ଯୁକ୍ତିରୁ ମନେହୁଏ ; ଯାହା ମଣିଷ କ୍ଷେତ୍ରରେ ସତ୍ୟ ତାହା ହୁଏତ କାବ୍ୟ କ୍ଷେତ୍ରରେ ସତ୍ୟ ହୋଇ ନ ପାରେ । ମାନବ ଜୀବନରେ

ଶୌର୍ଯ୍ୟାଦି ଗୁଣ ମଣିଷର ଆତ୍ମା ସହ ଜଡ଼ିତ । ମାତ୍ର ହାର ଅଂଗୁଷ୍ଠି ଆଦି ଅଳଙ୍କାର ଶରୀରର ଭୂଷଣ । ତେଣୁ ଦୁଇଟିର ଗୁରୁତ୍ୱ ଓ ଭୂମିକା ଭିନ୍ନ । ମାତ୍ର କାବ୍ୟ କ୍ଷେତ୍ରରେ ଏପରି ଦେଖାଯାଏ ନାହିଁ । କାବ୍ୟାତ୍ମାରେ ଉପମା, ଉତ୍ପ୍ରେକ୍ଷା ରୂପକାଦି ଅଳଙ୍କାର ଓ ମାଧୁର୍ଯ୍ୟ, ପ୍ରସାଦାଦି ଗୁଣ ଅଭିନ୍ନ ଭାବରେ ବାସ କରେ । ତେଣୁ କୌଣସି ପାର୍ଥକ୍ୟ ଏହି ଦୁଇଟି ମଧ୍ୟରେ ପରିଲକ୍ଷିତ ହୁଏ ନାହିଁ ।

ଯେଉଁମାନେ ଭେଦର ସମର୍ଥକ ସେମାନଙ୍କ ମଧ୍ୟରୁ ବାମନ, ଆନନ୍ଦବର୍ଦ୍ଧନ ଓ ମମ୍ମଟ ଆଦି ବିଭିନ୍ନ ମତ ପୋଷଣ ସୂତ୍ରର ମାନଦଣ୍ଡରେ ଭିନ୍ନତାର ପୋଷକତା କରନ୍ତି । ମମ୍ମଟ— ଆନନ୍ଦ ବର୍ଦ୍ଧନ ଗୋଟିଏ ପକ୍ଷର ସମର୍ଥକ ଏବଂ ବାମନ ଅନ୍ୟ ପକ୍ଷର ସମର୍ଥକ ।

ବାମନଙ୍କ ମତରେ ଗୁଣ କାବ୍ୟର ଶୋଭା ବର୍ଦ୍ଧକ ଧର୍ମ, ଉପମା, ଉତ୍ପ୍ରେକ୍ଷା ଭେଦ ଅଳଙ୍କାର ; କାବ୍ୟ- ସୌନ୍ଦର୍ଯ୍ୟ ପ୍ରତିଷ୍ଠାରେ ସହାୟକ ନୁହନ୍ତି । ଗୁଣ ଏକ ଚିରନ୍ତନ ବସ୍ତୁ, ଯାହାକି କାବ୍ୟ ସୌନ୍ଦର୍ଯ୍ୟ ପାଇଁ ଏକାନ୍ତ ଆବଶ୍ୟକ । ତାଙ୍କ ଭାଷାରେ—

'କାବ୍ୟ ଶୋଭାୟାଃ କର୍ତ୍ତାରୋ ଗୁଣାଃ
ତଦାତିଶୟ ହେତବ ସ୍ତ୍ୱ ଅଳଙ୍କାରାଃ ।

(କାବ୍ୟାଳଙ୍କାର ସୂତ୍ର— ବାମନ)

ଅର୍ଥାତ୍— ଗୁଣ କାବ୍ୟର ଶୋଭାକାରକ ଏବ ଅଳଙ୍କାର ଶୋଭାତିଶୟ କାରକ ।

ମାତ୍ର ମମ୍ମଟ ଓ ଆନନ୍ଦବର୍ଦ୍ଧନ ଆଦି ଆଳଙ୍କାରିକମାନେ ଏ ମତର ବିରୋଧ କରିଅଛନ୍ତି । ଧ୍ୱନିକାର ଆନନ୍ଦ ବର୍ଦ୍ଧନ କହନ୍ତି ; କାବ୍ୟ ରସକୁ ଆଶ୍ରୟ କରିଥିବା ଧର୍ମହିଁ ଗୁଣ ଏବଂ କାବ୍ୟ ଅଙ୍ଗୀଭୂତ ଶବ୍ଦ ଓ ଅର୍ଥର ଧର୍ମହିଁ ଅଳଙ୍କାର ।

ଯଥା :— "ତମର୍ଥମ ଅବଲମ୍ବନ୍ତେ ଯେଽଙ୍ଗିନଂ ତେ ଗୁଣାଃସ୍ମୃତାଃ ।
ଅଂଗାଶ୍ରିତା ସ୍ତ୍ୱଲଙ୍କାରାଃ ମନ୍ତବ୍ୟାଃ କଟକାଦିବତ୍ ।

ଅର୍ଥାତ୍ — କାବ୍ୟସ୍ଥ ରସକୁ ଆଶ୍ରୟ କରିଥିବା ଧର୍ମଗୁଡ଼ିକ ଗୁଣ ଏବଂ ଶବ୍ଦ ଓ ଅର୍ଥରେ ଥିବା ଧର୍ମଗୁଡ଼ିକ ଅଳଙ୍କାର । ତେଣୁ ଗୁଣ ଓ ଅଳଙ୍କାର ଅଭିନ୍ନ ନୁହନ୍ତି ; ଭିନ୍ନ । ଆଳଙ୍କାରିକ ମମ୍ମଟ ସ୍ପଷ୍ଟଭାବରେ ଏହି ମତର ପୋଷକତା କରି କହନ୍ତି , ରସର ଉତ୍କର୍ଷ ପ୍ରତିପାଦକ ତଥା ସହ ଅଚଳ ସ୍ଥିତିବାନ ଧର୍ମ ହେଉଛି ଗୁଣ । ଅଳଙ୍କାର ରସର ଧର୍ମ ନୁହେଁ, ତାହା ଶବ୍ଦ ଓ ଅର୍ଥର ଶୋଭାବର୍ଦ୍ଧକ ଧର୍ମ । ତେଣୁ ଗୁଣ ଭିତରେ ଅଳଙ୍କାର ଏକାଭୂତ ହେବା ସମ୍ଭବ ନୁହେଁ ।

ଦଣ୍ଡୀଙ୍କ ଦୃଷ୍ଟିରେ ଗୁଣ କାବ୍ୟର ପ୍ରାଣ । କିନ୍ତୁ ଏହି ଗୁଣ ଓ ଅଳଙ୍କାର ମଧ୍ୟରେ ସମ୍ପର୍କ କଣ ; ସେ ବିଷୟରେ ଦଣ୍ଡୀ ସ୍ପଷ୍ଟ ନୁହନ୍ତି । ତାଙ୍କ ମତାନୁସାରେ କାବ୍ୟର ଶୋଭାକାରକ ଧର୍ମ ହେଉଛି ଅଳଙ୍କାର, ଯାହାକି ଅନେକ । ରୂପକ, ଦୀପକ, ଉପମା ଆଦି ଅଳଙ୍କାର ଗୁଡ଼ିକ ଦଣ୍ଡୀଙ୍କ ମତରେ ସାଧାରଣ ଅଳଙ୍କାର । ଏହି ସାଧାରଣ ଅଳଙ୍କାର ଭିନ୍ନ ଅନ୍ୟ ପ୍ରତ୍ୟେକ କାବ୍ୟ ଶୋଭା ଉତ୍ପାଦନକାରୀ ବସ୍ତୁ ମଧ୍ୟ ଗୋଟିଏ ଗୋଟିଏ ଅଳଙ୍କାର । ତେଣୁ ଗୁଣ ମଧ୍ୟ ତାଙ୍କ ମତରେ ଗୋଟିଏ ଅଳଙ୍କାର । କିନ୍ତୁ ଏହି ଗୁଣ ସ୍ୱୟଂ-ସ୍ୱତନ୍ତ୍ର ନୁହେଁ । ଉଭୟ ଅଂଶରେ ଏହା କାବ୍ୟ ଶୋଭା ସଂପାଦନରେ ସକ୍ଷମ !

ଏ ସମ୍ପର୍କରେ ରୀତିବାଦୀ ବାମନଙ୍କ ମତ ଅତି ତର୍କସଙ୍ଗତ । ସେ ଗୁଣ ଓ ଅଳଙ୍କାର ମଧ୍ୟରେ ଥିବା ସମ୍ବନ୍ଧ ସମ୍ପର୍କରେ ନୂତନ ସିଦ୍ଧାନ୍ତ ଗ୍ରହଣ କରି ପାରି ନାହାନ୍ତି । ସେ ଅଳଙ୍କାରକୁ କାବ୍ୟ

ଶୋଭାକାରୀ ବସ୍ତୁ ରୂପେ ଗ୍ରହଣ କରିଛନ୍ତି । ଶବ୍ଦ ଓ ଅର୍ଥର ସୌନ୍ଦର୍ଯ୍ୟରେ କାବ୍ୟର ସୌନ୍ଦର୍ଯ୍ୟ ନିହିତ ବୋଲି ସ୍ୱୀକାର କରନ୍ତି । କେବଳ 'ନିତ୍ୟ' ଓ 'ଅନିତ୍ୟ' ଏହି ଦୁଇ ଶବ୍ଦ ପ୍ରୟୋଗରେ ଗୁଣ ଓ ଅଳଙ୍କାରର ଭେଦ କଳ୍ପନା କରିଛନ୍ତି । ତାଙ୍କ ମତରେ ମାଧୁର୍ଯ୍ୟ ପ୍ରସାଦାଦି ଗୁଣ କାବ୍ୟର ସୌନ୍ଦର୍ଯ୍ୟ ବିଧାୟକ ନିତ୍ୟ ଧର୍ମ ଏବଂ ରୂପକ ଉପମାଦି ଅଳଙ୍କାର କାବ୍ୟର ଉତ୍କର୍ଷ ବିଧାୟକ ଅନିତ୍ୟ ଧର୍ମ । କିନ୍ତୁ ଗୁଣ, କାବ୍ୟଶୋଭା ସଂପାଦନ କ୍ଷମ । ଅଳଙ୍କାର କାବ୍ୟ ଉତ୍କର୍ଷ ବିଧାୟକ— ଏହାହିଁ ଗୁଣ ଓ ଅଳଙ୍କାର ମଧ୍ୟରେ ଥିବା ମୌଳିକ ସୂକ୍ଷ୍ମ ପାର୍ଥକ୍ୟ ।

## କାବ୍ୟ ଓ ଗୁଣ :—

କାବ୍ୟରେ ଗୁଣର ସ୍ଥିତି ଅତି ଗୁରୁତ୍ୱପୂର୍ଣ୍ଣ । କାବ୍ୟ ଅଳଂକୃତ ହୋଇ ଗୁଣହୀନ ହେଲେ ଶ୍ରୁତି ସୁନ୍ଦର ଓ ମର୍ମ ମଧୁର ହୁଏ ନାହିଁ । ତେଣୁ ଆଳଙ୍କାରିକ ଭୋଜରାଜ କହନ୍ତି— କାବ୍ୟ ଅଳଙ୍କାର ପରିପୂର୍ଣ୍ଣ ହୋଇ ଗୁଣଯୁକ୍ତ ହେବା ବିଧେୟ । ଯଥା —

ଅଳଂକୃତ ମପି ଶ୍ରବ୍ୟ ନ କାବ୍ୟ ଗୁଣ ବର୍ଜିତମ
ଗୁଣଯୋଗ ସ୍ତୟୋ ମୁଖ୍ୟୋ ଗୁଣାଳଙ୍କାର ଯୋଗୟୋଃ ।
(ସରସ୍ୱତୀ କଣ୍ଠାଭରଣ)

ଏହି ମତ ସହ ଏକମତ ହୋଇ ବାମନଦେବ କହନ୍ତି, ଅଳଙ୍କାର ଯୁକ୍ତ କାବ୍ୟ ଗୁଣ ରହିତ ହେଲେ ଆନନ୍ଦପ୍ରଦ ହୁଏ ନାହିଁ ।

"ଅଳଂକୃତ ମପି ପ୍ରୀତ୍ୟୈ ନ କାବ୍ୟଂ ନିର୍ଗୁଣଂ ଭବେତ୍"
(ଅଗ୍ନିପୁରାଣ)

ସୁତରାଂ କାବ୍ୟରେ ଗୁଣର ସ୍ଥିତି ଅତ୍ୟନ୍ତ ଉପାଦେୟ । ଦୋଷ ବର୍ଜ୍ଜନଦ୍ୱାରା ବସ୍ତୁର ମହତ୍ତ୍ୱ ଯେପରି ପ୍ରକଟିତ ସେହିପରି ଦୋଷର ଅଭାବଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ପ୍ରସ୍ଫୁଟିତ । କାବ୍ୟଶାସ୍ତ୍ର ପ୍ରଣେତା ଭରତଙ୍କ ଭାଷାରେ— "ଗୁଣା ବିପର୍ଯ୍ୟୟା ଦୋଷାଃ" ହେଲେ କାବ୍ୟ ସୁନ୍ଦର ହୁଏ ।

## ଗୁଣର ପ୍ରକାର ଭେଦ :—

ପଣ୍ଡିତ ବିଶ୍ୱନାଥ କବିରାଜ ଆଦି ବହୁ ଆଳଙ୍କାରିକ କାବ୍ୟରେ ଦଶଗୁଣର ଉଲ୍ଲେଖ କରିଛନ୍ତି । ଭରତ ମଧ୍ୟ ଦଶ ଗୁଣର କଥା ସ୍ୱୀକାର କରିଥିଲେ । ସେ ଗୁଡ଼ିକ :—

ଶ୍ଲେଷ ପ୍ରସାଦଃ ସମତା ସମାଧିଃ
ମାଧୁର୍ଯ୍ୟ ମୋଜଃ ପଦ ସୌକୁମାର୍ଯ୍ୟମ୍
ଅର୍ଥସ୍ୟ ଚ ବ୍ୟକ୍ତି ରୁଦାରତା ଚ
କାନ୍ତିଶ୍ଚ କାବ୍ୟସ୍ୟ ଗୁଣା ଦଶୈତେ ।

ମାତ୍ର ଶ୍ଳେଷ, ପ୍ରସାଦ, ସମତା, ସମାଧି ଆଦି ଦଶଗୁଣ କାବ୍ୟର ଶ୍ରୀବୃଦ୍ଧି କରୁଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ ତିନୋଟି ଗୁଣ ପ୍ରଧାନ । ମାଧୁର୍ଯ୍ୟ, ଓଜଃ, ପ୍ରସାଦ— ଏହି ତିନୋଟି ପ୍ରଧାନ ଗୁଣ ମଧ୍ୟରେ ଅନ୍ୟ ସମସ୍ତ ଗୁଣ ଅନ୍ତର୍ଭୁକ୍ତ । ଏତଦ୍ ବ୍ୟତୀତ ଅନ୍ୟମାନଙ୍କର ସେପରି କୌଣସି ଦର୍ଶନୀୟ ବୈଶିଷ୍ଟ୍ୟ ଥିଲାପରି ମନେ ହୁଏନାହିଁ ।

## ମାଧୁର୍ଯ୍ୟ :—

ଏହା ରସବିଷ୍ଟ ଅର୍ଥ ପ୍ରତୀତ କରେ । ଯାହା ଚିତ୍ତକୁ ଦ୍ରବୀଭୂତ କରି ଆହ୍ଲାଦ ବା ଆନନ୍ଦ ଉପୁଜାଏ ତାହାକୁ ମାଧୁର୍ଯ୍ୟ କହନ୍ତି । ଯେଉଁ କୋମଳକାନ୍ତ ପଦ ପ୍ରୟୋଗ ଦ୍ୱାରା ଚମତ୍କାର

ଅର୍ଥ ପ୍ରତୀତ ହୋଇ ହୃଦୟ ପ୍ରଫୁଲ୍ଲ ପ୍ରସନ୍ନ ହୁଏ ସେହିଠାରେ ମାଧୁର୍ଯ୍ୟ ଗୁଣ ଦେଖାଦେଇଥାଏ । ମାଧୁର୍ଯ୍ୟ ଗୁଣ ସଂଯୋଗ ଶୃଙ୍ଗାର, ବିପ୍ରଲମ୍ଭ, କରୁଣ ଓ ଶାନ୍ତରସରେ କ୍ରମେ ଅଧିକଭାବେ ବ୍ୟକ୍ତ ହୋଇଥାଏ । ଯଥା— "ସମ୍ଭୋଗେ କରୁଣେ ବିପ୍ରଲମ୍ଭେ ଶାନ୍ତେଽଧିକଂ କ୍ରମାତ୍"— ମାଧୁର୍ଯ୍ୟ ଗୁଣ ବ୍ୟକ୍ତ ହୋଇଥାଏ । ତା ଛଡ଼ା ମାଧୁର୍ଯ୍ୟ ଗୁଣରେ ବର୍ଗର ୧ମ ଓ ୫ମ ବର୍ଣ୍ଣର ସଂଯୋଗ ଘଟିଥାଏ । ଯେପରି ( ଙ୍ + ଗ ) । ଟ, ଠ, ଡ, ଢ ବର୍ଣ୍ଣ ହୋଇପାରେନା, ( ବର୍ଗର ୫ମ ବର୍ଣ୍ଣ— ଙ, ଞ, , ଣ, ନ, ମ— ୧ମ ବର୍ଣ୍ଣ, କ, ଚ, ଟ, ତ, ପ ) କିମ୍ବା ଯହିଁ 'ର' ଓ 'ଣ' ଲଘୁଭାବରେ ଉଚ୍ଚାରିତ ହୋଇଥାଏ ଏବଂ ଯେ ଯେବେ ଅଳ୍ପ ସମାସ ବା ସମାସହୀନ ହୋଇଥାଏ ତାହେଲେ ତାହା ମାଧୁର୍ଯ୍ୟ ଗୁଣ ବ୍ୟଞ୍ଜକ ହୁଏ । ଶବ୍ଦ ଓ ଅର୍ଥ ଭେଦରେ ମାଧୁର୍ଯ୍ୟ ଗୁଣ ଦୁଇପ୍ରକାର । ଶବ୍ଦ ମାଧୁର୍ଯ୍ୟ ଓ ଅର୍ଥ ମାଧୁର୍ଯ୍ୟ ।

ଉ.ଦା:—(କ) ଲତା କୁଞ୍ଜଂ ଗୁଞ୍ଜନ ମଦବଦଳି ପୁଞ୍ଜଂ ଚପଳୟନ୍
ସମାଲିଙ୍ଗନଙ୍ଗଂ ଦ୍ରୁତତର ମନଙ୍ଗମ୍ ପ୍ରବଳୟନ୍
ମରୁନ୍ମନ୍ଦଂ ମନ୍ଦଂ ଦଳିତ ମରବିନ୍ଦଂ ତରଳୟନ୍
ରଜୋ ବୃନ୍ଦଂ ବିନ୍ଦନ୍ କିରତି ମକରନ୍ଦଂ ଦିଶିଦିଶି ।
(ବିଶ୍ୱନାଥ କବିରାଜ)

(ଖ) କାହ୍ନୁଙ୍କ ମୋହରେ ସଂସାର ଲଟ
ମଧ୍ୟରେ ଦ୍ୱନ୍ଦ୍ୱ କଲ ସଂଘଟ ।

(ଗ) କାହ୍ନୁ ପାଇଁ ଚନ୍ଦ୍ରମାଙ୍କୁ ହସିଦେଲ
କେଶ ଧଇଲେ କାଳ କି ଅବକାଶ
କାସ କୁସୁମ ସଦୃଶ ସନେକର
ଭବ ଭାବନା ବାଳମୁକୁନ୍ଦଙ୍କର

କର କର ଅରବିନ୍ଦେ ପାଦ କୁଞ୍ଚି
କଞ୍ଜନେଣ ମଣ୍ଡି ଚନ୍ଦ୍ର ନେସ ଭୃଞ୍ଚ
କଞ୍ଚି ଶିବ ଆରମ୍ଭି ଯେଉଁ କୃଷ୍ଣ
କୃଷ୍ଣ ଚନ୍ଦ୍ର ସେ କୃଷ୍ଣଙ୍କୁ ମହାକୃଷ୍ଣ ।

(ରସକଲ୍ଲୋଳ)

**ଓଜଃ :—**

ଯାହା ଶ୍ରବଣ କଲେ ଚିତ୍ତ ବିସ୍ତୃତ ଓ ଦୀପ୍ତ ହୋଇଥାଏ ତାହାକୁ ଓଜଃଗୁଣ ପ୍ରକାଶକ ବର୍ଣ୍ଣ କହନ୍ତି । ସାହିତ୍ୟ ଦର୍ପଣରେ ଓଜଃଗୁଣ ସଂପର୍କରେ କୁହାଯାଇଛି ; "ଓଜଶ୍ଚିତ୍ତସ୍ୟ ବିସ୍ତାର ରୂପଂ ଦୀପ୍ତତ୍ୱ ମୁଚ୍ୟତେ" । ଅଳ୍ପ ଅକ୍ଷର ଦ୍ୱାରା ଦୀର୍ଘବାକ୍ୟ ପ୍ରକାଶ କରିବାର ପ୍ରଚେଷ୍ଟାରେ ହିଁ ଓଜଃଗୁଣ ପ୍ରତିଭାତ ହୋଇଥାଏ । ଏହା କ୍ରମାନୁସାରେ ବୀର, ବୀଭତ୍ସ ଓ ରୌଦ୍ର ରସରେ ଅଧିକ ପରିମାଣରେ ଦେଖାଦେଇଥାଏ । (୧) ବର୍ଗର ୧ମ ବର୍ଣ୍ଣ ସହିତ ସେହି ବର୍ଗର ୨ୟ ବର୍ଣ୍ଣ ଏବଂ ୩ୟ ବର୍ଣ୍ଣ ସହିତ ୪ର୍ଥ ବର୍ଣ୍ଣର ସଂଯୋଗ ହେଲେ ; 'ରେଫ' ଓ 'ରଫଳା' ଯୁକ୍ତ ବର୍ଣ୍ଣ ଥିଲେ, କିମ୍ବା ଟ, ଠ, ଡ, ଢ, ଶ, ଷ ବର୍ଣ୍ଣର ସମାବେଶ ହୋଇଥିଲେ ଓଜଃ ଗୁଣ ପ୍ରକାଶିତ ହୋଇଥାଏ । ଦୀର୍ଘ ସମାସ ଯୁକ୍ତ ଓ ଆଡମ୍ବର ପୂର୍ଣ୍ଣ ପଦ ରଚନା ହୋଇଥାଏ ତାହାହେଲେ ସେଥିରେ ହିଁ ଓଜଃଗୁଣ ଦେଖାଦେଇଥାଏ ।

---

(୧) ଓଜଶ୍ଚିତ୍ତସ୍ୟ ବିସ୍ତାର ରୂପଂ ଦୀପ୍ତତ୍ୱ ମୁଚ୍ୟତେ
ବୀର ବୀଭତ୍ସ ରୌଦ୍ରେଷୁ କ୍ରମେଣାଧିକ୍ୟ ମସ୍ୟତୁ ।
(ସା: ଦ:)

ଉଦାହରଣ :—

(କ) ଶ୍ୱାନ ଶୃଗାଳ ଗୃଧ୍ର ଡାକିନୀ ପିଶାଚ ଭୂତ ଚଣ୍ଡୀକି ଘେନି
ଶୋଭିତ କଲେ ଯୁଦ୍ଧ ଅବନୀ ଅଧ ଦଣ୍ଡରେ ସେ ।

(ସୁଭଦ୍ରା ପରିଣୟ)

## ପ୍ରସାଦ :—

ଯାହା ଅନାୟାସରେ ହୃଦୟକୁ ଅଭିଭୂତ କରେ ; ବିନା ପ୍ରଯତ୍ନରେ ରସାସ୍ୱାଦ ଯେଉଁଠି ସମ୍ଭବ ହୋଇଥାଏ କିମ୍ବା ଶୁଷ୍କ କାଠରେ ଅଗ୍ନି ତତ୍କ୍ଷଣାତ୍ ବ୍ୟାପିଗଲା ପରି ବା ସଫା ଲୁଗାରେ ଜଳ ପରିବ୍ୟାପ୍ତ ହୋଇଗଲା ପରି ଯେଉଁଠି ଭାବ ସମଗ୍ର ଚିତ୍ତରେ ବ୍ୟାପି ଯାଏ ସେଠି ପ୍ରସାଦ ଗୁଣର ସୃଷ୍ଟି ହୋଇଥାଏ । ଅନ୍ୟ ପ୍ରକାରରେ କହିଲେ— ଯେଉଁଠି ବିନା ଚେଷ୍ଟାରେ କାବ୍ୟର ଭାବ ସୁସ୍ପଷ୍ଟ ଓ ହୃଦବୋଧ ହୋଇ ପାରୁଥାଏ, ସେଠି ପ୍ରସାଦ ଗୁଣ ଦେଖାଯାଏ । ଯେଉଁ ସବୁ ଶବ୍ଦ ଶ୍ରବଣ ମାତ୍ରେ ଅର୍ଥବୋଧ ହୋଇଥାଏ । ସେ ସବୁ ପ୍ରସାଦ ଗୁଣ ପ୍ରକାଶକ ଶବ୍ଦ । ପ୍ରସାଦ ଗୁଣ, ରସର ପ୍ରକାଶକ । ପ୍ରସାଦ ଗୁଣ ସର୍ବରସାଶ୍ରୟୀ । ବୀର, ଶୃଙ୍ଗାର, କରୁଣ ପ୍ରତ୍ୟେକ ରସରେ ଏହାର ସ୍ଥିତି । ଏହି ଗୁଣର ସରଳତା ଓ ସ୍ୱଚ୍ଛତା ଏହାକୁ ଅଳଙ୍କାର ଶାସ୍ତ୍ରରେ ଏକ ଆଦରଣୀୟ ଆସନ ଦାନ କରିପାରିଛି ।

ଉଦାହରଣ :—

(କ) ରମ୍ଭା ଖଞ୍ଜା ଗଲା ତୋର ଅଙ୍ଗ ବୃଦ୍ଧି ଲାଗି
କହ ତା' ସଂଯୋଗେ କିପାଁ ହେଲୁ ଦୁଃଖଭାଗୀ

ସ୍ୱାଧୀନତା ପ୍ରିୟମେ, ଧର ଅଟର ଚରଣ
ଭାଗ୍ୟ ଅରକନୁ ସୁଖ ମଣିଲ୍ ମରଣ ।

( ଚାଙ୍କଡ଼ଗଛ—ଅବକାଶ ଚିନ୍ତା )

## ଉପସଂହାର :—

କାବ୍ୟର କାବ୍ୟତ୍ୱ ପାଇଁ ଗୁଣ ଅପରିହାର୍ଯ୍ୟ କାରଣ ଏହା କାବ୍ୟର ଶୋଭାକାରକ ଧର୍ମ । ରସ ଯଦି କାବ୍ୟର ପ୍ରାଣ ହୁଏ ; ଗୁଣ ରସର ସ୍ଥାୟୀଧର୍ମ । ରସର ଉତ୍କର୍ଷ ବିଧାନ ଓ ସ୍ଥିତିର ସନାତନତ୍ୱ ପାଇଁ ଗୁଣ ଏକମାତ୍ର ଅବଲମ୍ବନ । ରୀତି ଯଦି କାବ୍ୟର ଆତ୍ମା ହୁଏ, ତାହାହେଲେ ଗୁଣ ରୀତି ପରିପୁଷ୍ଟିର ପ୍ରଧାନ ସହାୟକ । ତେବେ ଏ ସବୁ ଦୃଷ୍ଟିରୁ ଗୁଣ ଯେ କାବ୍ୟର ଏକ ଅନ୍ତରଙ୍ଗ ପଦାର୍ଥ ; ତାହା ସର୍ବବାଦୀ ସମର୍ଥ । ଗୁଣର ବଳିଷ୍ଠତାରେ ମାନବର ଗୁଣରାଜି ଉତ୍କର୍ଷ ପ୍ରତିପାଦିତ ହେଉଥିଲା, କାବ୍ୟ ଗୁଣର ସ୍ୱାଭାବିକତାରେ କାବ୍ୟ ବୈଶିଷ୍ଟ୍ୟ ମଣ୍ଡିତ ହୁଏ ।



# ଭାରତୀୟ ଅଳଂକାର ତତ୍ତ୍ୱର କ୍ରମ ପରିଣତି

କାବ୍ୟ ତତ୍ତ୍ୱ, ଅଲଙ୍କାର, ବ୍ୟାକରଣ ଓ ଭାଷାତତ୍ତ୍ୱ ଆଦି ବହୁ ସାହିତ୍ୟ ସଂବିଧାନର ସ୍ଥିତି ପ୍ରାଚୀନ ଭାରତୀୟ ସାହିତ୍ୟରେ ବିରଳ ନୁହେଁ । ପ୍ରାଚୀନ ଯୁଗରେ ସୃଜନାତ୍ମକ ସାହିତ୍ୟ ସୃଷ୍ଟିର ତାଳେ ତାଳେ ଅଲଙ୍କାର ଓ କାବ୍ୟ ଶାସ୍ତ୍ରର ସୃଷ୍ଟି ହୋଇଛି । କାବ୍ୟ ଶାସ୍ତ୍ରର ନୀତି ନିର୍ଦ୍ଦେଶରେ ସାହିତ୍ୟର ଶ୍ରୀବୃଦ୍ଧି ଘଟିଛି । କାବ୍ୟ ଶାସ୍ତ୍ରର ଅନୁମୋଦନ ନ ହେଲେ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ପାଇନାହିଁ । ବୈଦିକ ଯୁଗରୁ ଆରମ୍ଭ କରି ଅଧୁନାତନ ସାହିତ୍ୟ ଧାରାରେ ସାହିତ୍ୟତତ୍ତ୍ୱ ଓ ଅଲଙ୍କାରର କ୍ରମିକ ପ୍ରଗତି ଓ ବିକାଶ ଘଟିଛି । ଆଜିପର୍ଯ୍ୟନ୍ତ ଯେତେ ଗୁଡ଼ିଏ ଭାରତୀୟ ଅଲଙ୍କାର ଗ୍ରନ୍ଥ ଆବିଷ୍କୃତ ହୋଇଛି ସେମାନଙ୍କ ମଧ୍ୟରୁ ସର୍ବପ୍ରଥମର ରଚନାକାଳ ପ୍ରାୟ ଷଷ୍ଠ ଶତାବ୍ଦୀ । ତା'ବୋଲି ଯେ ଏହା ପୂର୍ବରୁ ଅଳଙ୍କାରର ପ୍ରୟୋଗ ନ ଥିଲା, ତାହା କହି ହେବନି— କିନ୍ତୁ କେଉଁ ଅର୍ଥରେ ଏହି ଅଳଙ୍କାରକୁ ଗ୍ରହଣ କରାଯାଇଥିଲା କିମ୍ବା କ୍ରମଶଃଭାବେ ଅଲଙ୍କାର ଧାରଣାର ଅଭ୍ୟୁଦୟ ଘଟିଲା ତାହା ଏବେ ସୁଦ୍ଧା ପୂର୍ବବତ୍ ରହସ୍ୟାବୃତ । ତେବେ ଏ କଥା ସତ୍ୟ ଯେ, ପ୍ରାଚୀନ ଭାରତୀୟ ସାହିତ୍ୟରେ ଅଲଙ୍କାର ଓ ଉପମା— ଏହି ଦୁଇଟିର ପ୍ରୟୋଗ ଖୁବ ପ୍ରାଚୀନ ।

ଋକ୍‌ବେଦରେ କୁହାଯାଇଛି — "ବାୟୁ ବାୟାହି ଦର୍ଶତେ ମେ ସୋମା ଅରଂକୃତାଃ — ଅର୍ଥାତ୍ ହେ ପ୍ରିୟଦର୍ଶନ ବାୟୁଦେବତା ; ତୁମେ ଆସ, ତୁମପାଇଁ ସୋମରସ ଅଳଂକୃତ କରି ରଖିଛୁ । (ଅରଂକୃତ = ଅଳଂକୃତ )— ଏହା ଯାସ୍କ ମୁନିଙ୍କର ବ୍ୟାଖ୍ୟା) । ପୁଣି ବସ୍ତ୍ରାଳଙ୍କାରରେ ଅଳଂକୃତ କରି ଅପ୍ସରାମାନେ ବ୍ରହ୍ମବିଦ୍‌ମାନଙ୍କୁ ବ୍ରହ୍ମାଙ୍କ ସମୀପକୁ ଅଭ୍ୟର୍ଥନା କରି ଆଣିଥିବାର ଉଲ୍ଲେଖ ଅଛି ଋଗ୍‌ବେଦର କୌଷିତକୀ ଉପନିଷଦରେ ଦିଆଯାଇଛି । ଏତଦ୍‌ଭିନ୍ନ ଉପମାର ପ୍ରୟୋଗ ଯାଜ୍ଞବଲ୍କ୍ୟଙ୍କ ଯଜୁର୍ବେଦୀୟ ଶତପଥ ବ୍ରାହ୍ମଣର ସପ୍ତଦଶ କାଣ୍ଡରେ ପୁରୁଷକୁ ବୃକ୍ଷସହ ତୁଳନା ପ୍ରସଙ୍ଗରେ କରି-ଛନ୍ତି । ଯେପରି— "ଯଥା ବୃକ୍ଷୋ ବନସ୍ପତି ତଥୈବ ପୁରୁଷଃ । ତସ୍ୟ ଲୋମାନି ପର୍ଣ୍ଣାନି, ତ୍ୱକ୍ ଅସ୍ୟ ଉତ୍ପାଟିକା ବହିଃ ; ତ୍ୱଚଃ ରୁଧିରେ ରସୋ ବୃକ୍ଷାତ୍‌ଙ୍ଖେବ ।" ଅର୍ଥାତ୍ ପୁରୁଷର ଲୋମ—ବୃକ୍ଷର ପତ୍ର, ତ୍ୱକ୍ ବଲ୍କଳ, ରୁଧିର ରସ, ଅସ୍ଥି କାଠ, ବୃକ୍ଷର ମଜ୍ଜା, ପୁରୁଷର ଦେହର ମଜ୍ଜା ସ୍ୱରୂପ । ଏହାପରେ ପୁଣି ବାଲ୍ମୀକି ତାଙ୍କ ରାମାୟଣର ବହୁକ୍ଷେତ୍ରରେ ଉପମାର ପ୍ରୟୋଗ କରିଛନ୍ତି ।

ଏଥିରୁ ସ୍ପଷ୍ଟ ମନେହୁଏ ଯେ ପ୍ରାଚୀନ କାଳର ପଣ୍ଡିତ ମହାଋଷିମାନଙ୍କ ନିକଟରେ ଅଳଂକାରର ଅର୍ଥ ଥିଲା— ସୁନିଷ୍ଠ କରଣ । ନିଜସ୍ୱ ବିଷୟର ପ୍ରକାଶ, ସ୍ୱଭାବବେତ୍ତା କିମ୍ବା ସୁନ୍ଦର ହେଉ ନ ଥିବାରୁ ସେମାନେ ନିଜର ଭାବନା ପ୍ରକାଶକୁ ଅଳଙ୍କରଣ କରିବାକୁ ଚେଷ୍ଟା କରୁଥିଲେ । ଏହି ଅଳଙ୍କରଣର ପ୍ରଧାନ ଅବଲମ୍ବନ— ପ୍ରକାଶରେ ସାଦୃଶ୍ୟ ସମ୍ବନ୍ଧର ସଂସ୍ଥାପନା । ଅଥାତ୍ ଉପମାର ସୃଷ୍ଟି । କିନ୍ତୁ ଏହି ଆଦ୍ୟ ଯୁଗରେ ଅଳଙ୍କାର ପୃଥକ ସାହିତ୍ୟ ଶାସ୍ତ୍ରରୂପେ ଦେଖାଦେଇ ନ ଥିଲା ଏବଂ ଉପମାକୁ ଭିନ୍ନ

ଏକ ଅଳଙ୍କାର ରୂପେ ଗ୍ରହଣ କରାଯାଇ ନ ଥିଲା । ଆର୍ଯ୍ୟୋତ୍ତର ଯୁଗରେ ଏହି ସବୁ ଅଳଙ୍କାର ଶାସ୍ତ୍ରର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ ହେଲା ।

ଯାସ୍କମୁନି ତାଙ୍କ ନିରୁକ୍ତ ଗ୍ରନ୍ଥରେ ଉପମାର ଉଲ୍ଲେଖ କରିଥିଲେ । ଏହି ନିରୁକ୍ତ ଗ୍ରନ୍ଥଟି ଏକାଧାରେ ବ୍ୟାକରଣ ଓ ଭାଷାତତ୍ତ୍ୱର ସୂଚନା ପ୍ରଦାନ କରିଥିଲା । ଯାସ୍କ ନିଜେ ଉପମା ସଂପର୍କରେ କୌଣସି ସ୍ୱତନ୍ତ୍ର ସଂଜ୍ଞା ନ ଦେଇ ଗାର୍ଗ୍ୟମୁନିଙ୍କର ସଂଜ୍ଞାଟି ଉଦ୍ଧାର କରିଥିଲେ । "ତଦ୍‌ତତ୍ ସଦୃଶମ ଇତି"— ଅର୍ଥାତ୍ ଦୁଇ ବିଜାତୀୟ ବସ୍ତୁର ସାଦୃଶ୍ୟରେ ଉପମାର ସୃଷ୍ଟି ହୁଏ । ସେ କର୍ମୋପମା, ସିଦ୍ଧୋପମା, ରୂପୋପମା, ଲୁପ୍ତୋପମା ଆଦି ଚାରୋଟି ଉପମାର ନିର୍ଦ୍ଦେଶ ଦେଇଥିଲେ ।

ଯାସ୍କମୁନିଙ୍କ ପରବର୍ତ୍ତୀ କାଳରେ ବିଶ୍ୱବନ୍ଦ୍ୟ ବୈୟାକରଣିକ ପାଣିନି (ପ୍ରାକ ଖ୍ରୀଷ୍ଟ ଷଷ୍ଠ ଶତକ) ଉପମାର ଅଭିବୃଦ୍ଧି ସାଧନ କରି ଉପମାନ, ଉପମିତ, ସାମାନ୍ୟ ବା ସାଧାରଣ ଧର୍ମ— ଏଇ ଉପମା ସଂପର୍କୀୟ ତିନୋଟି ଅଙ୍ଗର ସୂଚନା ଦେଇଥିଲେ । ଏଇ ଉପମା ପ୍ରସଙ୍ଗରେ ମଧ୍ୟ ପ୍ରାକ ଖ୍ରୀଷ୍ଟୀୟ ୪ର୍ଥ ଶତକରେ କାତ୍ୟାୟନ ତାଙ୍କ ବାର୍ତ୍ତିକ ସୂତ୍ରରେ ଉପମା ଉଲ୍ଲେଖ କରିଥିଲେ ଏବଂ ପତଞ୍ଜଳି ପାଣିନି ସୂତ୍ରର 'ମହାଭାଷ୍ୟ'ରେ ମଧ୍ୟ ଉପମା କଥାର ବିଚାର କରିଥିଲେ । ଏ ସବୁ ପ୍ରସଙ୍ଗ ଶ୍ରୀ ଶ୍ୟାମାପଦ ଚକ୍ରବର୍ତ୍ତୀ ତାଙ୍କ 'ଅଳଙ୍କାର ଚନ୍ଦ୍ରିକା' ଗ୍ରନ୍ଥରେ ସୂଚେଇଛନ୍ତି । ତେବେ ଏପର୍ଯ୍ୟନ୍ତ ଯେଉଁମାନଙ୍କ କଥା ଆଲୋଚନା କରାଗଲା ସେମାନେ କେହି ସ୍ୱୟଂ ସଂପୂର୍ଣ୍ଣ ଆଳଙ୍କାରିକ ନୁହଁନ୍ତି ବରଂ ବୈୟାକରଣିକ । ଋକ୍‌ବେଦ ଠାରୁ 'ମହାଭାଷ୍ୟ' ପର୍ଯ୍ୟନ୍ତ ଯେଉଁ ସବୁ ବିବରଣୀ ମିଳୁଛି ସେ ଗୁଡ଼ିକ କାବ୍ୟତତ୍ତ୍ୱ ଅଙ୍ଗୀଭୂତ କାବ୍ୟାଳଙ୍କାର ରୂପେ ସେ-ପର୍ଯ୍ୟନ୍ତ ସ୍ୱୀକୃତ

ହୋଇ ନ ଥିଲା— ତଥାପି ଏକଥା ସତ୍ୟ ଯେ ଅଳଙ୍କାରର ଜନ୍ମ ଓ ସ୍ୱାତନ୍ତ୍ର୍ୟ ପରିପୁଷ୍ଟି ସେଇ ବ୍ୟାକରଣରୁ । ଏପରି ହୋଇ ନ ଥିଲେ ପରବର୍ତ୍ତୀ କାଳରେ (ପ୍ରାକ ଖ୍ରୀଷ୍ଟ ପ୍ରଥମ ଶତକ) ଭରତ ତାଙ୍କ ନାଟ୍ୟ ଶାସ୍ତ୍ରରେ ଉପମା ରୂପକ, ଦୀପକ ଇତ୍ୟାଦିର ଉଲ୍ଲେଖ ପୂର୍ବକ ତା'ର ଲକ୍ଷଣ ପ୍ରଦାନ କରିବାକୁ ଯଥେଷ୍ଟ ଅବସର ପାଇ ନ ଥାନ୍ତେ ।

## ଭରତ ମୁନି : ନାଟ୍ୟଶାସ୍ତ୍ର : ପ୍ରାକ ଖ୍ରୀଷ୍ଟୀୟ ୧ମ ଶତକ

ଭରତ ମୁନି ନାଟ୍ୟଶାସ୍ତ୍ରରେ ଉପମା, ରୂପକ, ଦୀପକ ଓ ଯମକ ଆଦି କାବ୍ୟାଳଙ୍କାରର ସ୍ରଷ୍ଟା ନୁହନ୍ତି । ପୂର୍ବ ଆଚାର୍ଯ୍ୟମାନେ, ଯେଉଁମାନଙ୍କର ନାମ ସୂଚିତ କରିଥିଲେ ତାହାର ଉଲ୍ଲେଖ କଲେ ମାତ୍ର । ଅନେକଙ୍କ ମତରେ ଭରତଙ୍କ ନାଟ୍ୟଶାସ୍ତ୍ର ମୌଳିକ ଗ୍ରନ୍ଥ ନୁହେଁ । ପୂର୍ବାଚାର୍ଯ୍ୟଙ୍କ ଅଭିମତ ଓ ସଂଜ୍ଞାର ଆଧାରରେ ପରିପୁଷ୍ଟ । ଭରତ ମୁନିଙ୍କ ପର୍ଯ୍ୟନ୍ତ ଉପମା, ରୂପକ ଓ ଦୀପକ ଆଦି ତିନୋଟି ଅର୍ଥାଳଙ୍କାର ଏବଂ ଯମକ ଶବ୍ଦାଳଙ୍କାରର ସୃଷ୍ଟି ହୋଇଥିଲା— ଭରତ ମୁନିଙ୍କ ଭାଷାରେ :—

ଉପମା ଦୀପକଂ ଚୈବ ରୂପକଂ ଯମକଂ ତଥା
କାବ୍ୟ ସ୍ୟୈତେ ହ୍ୟଲଙ୍କାର ଶ୍ଚତ୍ୱାରଃ ପରିକୀର୍ତ୍ତିତାଃ ।

(ନାଟ୍ୟଶାସ୍ତ୍ର)

ସୁତରାଂ ଭରତ ମୁନିଙ୍କ କାଳ ପର୍ଯ୍ୟନ୍ତ ଅର୍ଥାଳଙ୍କାର ଭଳି ଏକ ମାତ୍ର ଶବ୍ଦାଳଙ୍କାର ରୂପେ ଯମକର ପ୍ରତିଷ୍ଠା ଓ ସୃଷ୍ଟି ସମ୍ଭବ ହୋଇ ପାରିଥିଲା । କାବ୍ୟରେ ରସତତ୍ତ୍ୱର ନିର୍ଦ୍ଦେଶ ଭରତଙ୍କ ଅତୁଳନୀୟ ଅବଦାନ । ତାଙ୍କର ପ୍ରବର୍ତ୍ତିତ ସଂଜ୍ଞା :—

"ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗାତ୍ ରସଃ ନିଷ୍ପତ୍ତିଃ ।"
ଅଥ ସ୍ଥାୟୀଭାବାନ୍ ରସତ୍ୱଂ ଉପଦେଷ୍ୟାମଃ ।।— ଭରତ ମୁନିଙ୍କର ଏହି ସୂତ୍ରଟିକୁ ପରବର୍ତ୍ତୀ କାଳରେ ବହୁ ଅଳଂକାରିକ ବିଶ୍ଳେଷଣ କରି ବିଭିନ୍ନ ବ୍ୟାଖ୍ୟା କରିଛନ୍ତି । ଏପରିକି ରସ; କାବ୍ୟତତ୍ତ୍ୱର ପ୍ରଧାନ ଅଙ୍ଗରୂପେ ଏବଂ କାବ୍ୟର ଆତ୍ମାରୂପେ ପ୍ରତିଷ୍ଠିତ ହୋଇଛି ।

## ଆଚାର୍ଯ୍ୟ ଦଣ୍ଡୀ : କାବ୍ୟାଦର୍ଶ : ଷଷ୍ଠ ଶତକ

ଦଣ୍ଡୀ ଅଳଙ୍କାରର ସଜ୍ଞା ନିରୂପଣ କଲେ । ତାଙ୍କ ମତରେ ଅଳଙ୍କାର; କାବ୍ୟର ଶୋଭା ବର୍ଦ୍ଧକ ଧର୍ମ । (କାବ୍ୟ ଶୋଭା-କାର ଧର୍ମାନ୍ ଅଳଙ୍କାରାଣ ପ୍ରଚକ୍ଷତେ ) ଦଣ୍ଡୀ ତାଙ୍କ କାବ୍ୟ ଶାସ୍ତ୍ରରେ ୩୨ ଗୋଟି ଅଳଙ୍କାରର ଆଲୋଚନା କରିଛନ୍ତି । ସ୍ୱରଚିତ ଅନେକ ସଂଜ୍ଞା ପ୍ରଦାନ କରିଛନ୍ତି ଏବଂ ସହଜବୋଧ ହେବାପାଇଁ ଚେଷ୍ଟାକ କରିଛନ୍ତି । ଦଣ୍ଡୀ ତାଙ୍କ ଗ୍ରନ୍ଥରେ ଧର୍ମୋପମା ଓ ବସ୍ତୂପମା ନାମରେ ଉପମାର ଦୁଇଟି ପ୍ରକାର ଭେଦ ଦେଇ-ଥିଲେ । କିନ୍ତୁ ଦଣ୍ଡୀଙ୍କ ପରେ ପରେ ଏଗୁଡ଼ିକ ଅଳଙ୍କାର ରାଜ୍ୟରୁ ବିଦାୟ ନେଇଥିଲେ । ଦଣ୍ଡୀ କାବ୍ୟର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଥିଲେ :—

'ଇଷ୍ଟାର୍ଥ ବ୍ୟବଚ୍ଛିନ୍ନା ପଦାବଳୀ କାବ୍ୟ'— ଅର୍ଥାତ୍ ଇଷ୍ଟ ଅର୍ଥ ସମ୍ବଳିତ ପଦାବଳୀ ହିଁ କାବ୍ୟ ।

## ଆଚାର୍ଯ୍ୟ ଭାମହ : କାବ୍ୟାଲଙ୍କାର : ସପ୍ତମ ଶତକ

ଭାମହ ଭରତଙ୍କୁ ଅନୁସରଣ କରି ଉପକଥା ଉଲ୍ଲେଖ କରିଛନ୍ତି । ତାଙ୍କ ଆଲୋଚନାରେ ଭରତଙ୍କ ଦଶଗୁଣ ଅନ୍ତର୍ଭୁକ୍ତ ମାଧୁର୍ଯ୍ୟ, ପ୍ରସାଦ, ଓଜଃ ଇତ୍ୟାଦିର ନାମ ଯେ ଗୁଣ ସେ ଏକଥା ଅବଦୀ ଉଲ୍ଲେଖ କରିନାହାନ୍ତି । ବରଂ ଗୁଣ ଭିତ୍ତିରେ ବୈଦର୍ଭୀ ଓ ଗୌଡ଼ୀ । ମାର୍ଗ (ରୀତି)ର ଉଲ୍ଲେଖ ଦେଇଛନ୍ତି । ସେ ତାଙ୍କ ଶାସ୍ତ୍ରରେ "ହେତୁ ସୂକ୍ଷ୍ମ ଲେଶ" ଏକ ଅଳଙ୍କାରର ନିର୍ଦ୍ଦେଶ ଦେଇଥିଲେ ଯାହାକି ପରବର୍ତ୍ତୀ କାଳରେ ବାମନଙ୍କ ଦ୍ୱାରା "ବ୍ୟାଜୋକ୍ତି" ନାମରେ ପରିଚିତ ହେଲା । ଭାମହଙ୍କର କାବ୍ୟ ସଂଜ୍ଞା :— ଶବ୍ଦାର୍ଥୌ ସହିତୌ କାବ୍ୟମ୍ ।

## ଆଚାର୍ଯ୍ୟ ବାମନ ଓ ଉଦ୍ଭଟ :—
## ଅଷ୍ଟମ ଶତକର ଶେଷାର୍ଦ୍ଧ — ନବମର ପ୍ରଥମ

ସୂତ୍ରାବଳି ଅଳଙ୍କାର ଶାସ୍ତ୍ରର ପ୍ରଣେତା ବାମନ । ଅଳଙ୍କାରଶାସ୍ତ୍ର ପ୍ରଣୟନ କ୍ଷେତ୍ରରେ ସେ ଆଗମ ଓ ତାଙ୍କର ଅଳଙ୍କାର ଶାସ୍ତ୍ର— କାବ୍ୟାଲଙ୍କାର ଶାସ୍ତ୍ର ବୃତ୍ତି' । 'କାବ୍ୟ ଗ୍ରାହ୍ୟମ ଅଳଙ୍କାରାତ୍ ଓ ଓ ରୀତିରାତ୍ମା କାବ୍ୟସ୍ୟ'— ତାଙ୍କର ପ୍ରଧାନ ପ୍ରତିପାଦିତ ଅଳଙ୍କାର ସିଦ୍ଧାନ୍ତ । ତାଙ୍କ ମତରେ ସୁନ୍ଦରତମ କାବ୍ୟ ଧର୍ମହିଁ ଅଳଙ୍କାର ବା ଅନ୍ୟ ଭାଷାରେ ସୌନ୍ଦର୍ଯ୍ୟମ୍ ଅଳଙ୍କାରଃ । କାବ୍ୟତତ୍ତ୍ୱ ବା ସୃଷ୍ଟିରେ ସୌନ୍ଦର୍ଯ୍ୟ ସଂପାଦନା ହିଁ ଅଳଙ୍କାର, ଉପମାଦି ତାର ସୌନ୍ଦର୍ଯ୍ୟ ବର୍ଦ୍ଧକ ଅବଲମ୍ବନ । କେବଳ ଉପମାଦି ଅଳଙ୍କାର ଥିଲେ କାବ୍ୟଶ୍ରେଷ୍ଠ ରୂପେ ପାଠକର ଗ୍ରହଣୀୟ— ଏହି ଅର୍ଥରେ କାବ୍ୟମ୍ ଗ୍ରାହ୍ୟମ୍ ଅଳଙ୍କାରାତ୍ ଶ୍ଳୋକଟିକୁ ଗ୍ରହଣ କରାଗଲେ

ଭୁଲ ହେବ । ଏଠି ଅଳଙ୍କାର କେବଳ ଅର୍ଥର ପ୍ରଯୁକ୍ତ ହୋଇ ନାହିଁ । ବରଂ ତାହା ସୌନ୍ଦର୍ଯ୍ୟ ଅଂଶେ ବର୍ଦ୍ଧକ । ଏହି ସୌନ୍ଦର୍ଯ୍ୟ ସଂପାଦନ ପାଇଁ କାବ୍ୟର ଅନିତ୍ୟ ଧର୍ମ ରୂପେ ଅଳଙ୍କାରଙ୍କୁ ବିବେଚିତ । ଏବଂ ନିତ୍ୟ ଧର୍ମ ରୂପେ ଗୁଣ ଗୃହୀତ । ତେଣୁ ରୀତିରାତ୍ମା କାବ୍ୟସ୍ୟ-- ଏହି ମତର ଅର୍ଥ ବିଶିଷ୍ଟ ପଦରଚନା ଏବଂ ପଦରଚନାର ବୈଶିଷ୍ଟ୍ୟ ମାଧୁର୍ଯ୍ୟାଦି ଗୁଣରେ ପ୍ରତିଫଳିତ । ସୁତରାଂ ଯାହା ରୀତି, ତାହାର ପ୍ରଧାନ ଆଧାରହିଁ ଗୁଣ— ଫଳରେ 'ବିଶେଷୋ ଗୁଣାତ୍ମା' । ମୋଟ ଉପରେ କାବ୍ୟର ଆତ୍ମାହିଁ ରୀତି ; ରୀତିର ଆତ୍ମା ଗୁଣ । ପରୋକ୍ଷରେ କାବ୍ୟର ଆତ୍ମାହିଁ ଗୁଣ । ରୀତ୍ୟାତ୍ମକ କାବ୍ୟ ଗୁଣମୟ ; ତେଣୁ ଗୁଣହିଁ କାବ୍ୟର ଏକମାତ୍ର ଶୋଭା । ତେଣୁ ଗୁଣ କାବ୍ୟର ନିତ୍ୟଧର୍ମ ଏବଂ ଅଳଙ୍କାର କାବ୍ୟର ଅନିତ୍ୟ ଧର୍ମ । ଯେଉଁଠି ଗୁଣ ନାହିଁ ସେଠି ଉପମାଦି ଅଳଙ୍କାର ଥାଇ ସୁଦ୍ଧା କାବ୍ୟର କାବ୍ୟତ୍ୱ ନାହିଁ ବୋଲି ବୁଝିବାକୁ ହେବ । ଗୋଟିଏ ଉଦାହରଣ ଦେଲେ ଏହା ଆଉ ଟିକିଏ ସ୍ପଷ୍ଟତର ହେବ । ମନେକରନ୍ତୁ ଜଣେ ଯୁବତୀ ଖୁବ୍ ଲାବଣ୍ୟମୟୀ । ସେ ଅନାଭରଣା ହେଲେ ମଧ୍ୟ ଖୁବ୍ ଉପଭୋଗ୍ୟା । ମାତ୍ର ଯଦିବା ଅଳଙ୍କାର ବିଭୂଷିତା ହୁଏ ତାହାହେଲେ ତାହାର ଅଙ୍ଗ ଶୋଭା ସମ୍ବର୍ଦ୍ଧିତ ହୋଇଥାଏ । ମାତ୍ର ତାର ଲାବଣ୍ୟମାଧୁରୀ ଯେତେବେଳେ ଜ-- ରାର ଶିକାର ହୁଏ ; ଲାବଣ୍ୟ ମଉଳିଯାଏ । ସେତେବେଳେ ସେ ବହୁ ଅଳଙ୍କାର ସମଣ୍ଡିତ ହେଲେ ପରମ ଉପଭୋଗ୍ୟା ହୋଇ ପାରେ କି ? ଠିକ୍ ସେହିପରି କାବ୍ୟକୁମାରୀର ବିଷୟ । କାବ୍ୟ କୁମାରୀର ଲାବଣ୍ୟହିଁ ତାର ମାଧୁର୍ଯ୍ୟାଦି ଅମୃତଗୁଣରେ ନିହିତ ; ଉପମାଦି ଅଳଙ୍କାର ତାର ବାହ୍ୟ ଭୂଷଣ ମାତ୍ର ।

କାବ୍ୟ ଶୋଭାୟାଃ କର୍ତ୍ତାରୋ ଗୁଣାଃ
ତଦତିଶୟ ହେତବଃ ସ୍ତ୍ୱଲଙ୍କାରାଃ ।
(କାବ୍ୟାଲଙ୍କାର ସୂତ୍ର)

ଏହାହିଁ ବାମନଙ୍କ କାବ୍ୟ ଦର୍ଶନ । କାବ୍ୟଶାସ୍ତ୍ରରେ ବାମନଙ୍କରେ ପ୍ରତିଷ୍ଠା କରି ଦଣ୍ଡୀଙ୍କ ଦ୍ୱାରା ସୂଚିତ ବୈଦର୍ଭୀ ଓ ଗୌଡ଼ୀ ରୀତିକୁ ସ୍ୱୀକାର କରିଛନ୍ତି । ବୈଦର୍ଭୀ ରୀତିକୁ ଶ୍ରେଷ୍ଠତ୍ୱ ପ୍ରଦାନ କରିଛନ୍ତି ଏବଂ ତାହା ସମସ୍ତ ଗୁଣ ବିଭୂଷିତ ବୋଲି ଉଲ୍ଲେଖ କରିଛନ୍ତି । 'ସମଗ୍ର ଗୁଣା ବୈଦର୍ଭୀ'—ତାପରେ ସେ କାବ୍ୟଶାସ୍ତ୍ରରେ ପାଞ୍ଚାଳୀ ନାମକ ଏକ ନୂତନ ରୀତିର ସଂଯୋଜକ । ରୀତିବାଦର ପ୍ରତିଷ୍ଠା ଅଳଙ୍କାର ଶାସ୍ତ୍ରର ଏକ ନୂତନ ପଦକ୍ଷେପ ଏବଂ ଅଳଙ୍କାର ବିକାଶ ପ୍ରସଙ୍ଗରେ ଏହା ଏକ ପ୍ରଗତି ସୋପାନ ।

ଉଦ୍‌ଭଟ୍ଟ, ଭାମହଙ୍କ କାବ୍ୟାଲଙ୍କାର ଶାସ୍ତ୍ରର ବ୍ୟାଖ୍ୟାକାର ତାଙ୍କର ସ୍ୱରଚିତ ଅଳଙ୍କାର ଗ୍ରନ୍ଥ – 'କାବ୍ୟାଲଙ୍କାର ସାରସଂଗ୍ରହ' ୧୬୭"—୭୪ ଖ୍ରୀଷ୍ଟାବ୍ଦରେ ଜର୍ମାନ ପଣ୍ଡିତ ଡକ୍ଟର ଜି: ବୁହ୍ଲାର (Dr. G Buhlar)ଙ୍କ ଦ୍ୱାରା ଆବିଷ୍କୃତ । ଏଥିରେ ବହୁ ନୂତନ ତତ୍ତ୍ୱର ସୂଚନା ପ୍ରଦତ୍ତ । ଏହା ଏକ ଉଚ୍ଚାଙ୍ଗ କାବ୍ୟଶାସ୍ତ୍ର ରୂପେ ଅଭିନବ ଗୁପ୍ତ ଆଦି ବହୁ ଆଲଙ୍କାରିକଙ୍କ ଦ୍ୱାରା ସମର୍ଥିତ । ଉଦ୍‌ଭଟ୍ଟ, କାବ୍ୟଶାସ୍ତ୍ରରେ ମୁଖ୍ୟତଃ ରସବାଦୀ ।

## ଆନନ୍ଦବର୍ଦ୍ଧନ ଓ ଅଭିନବ ଗୁପ୍ତ :—
## ନବମ ଶତକର ଉତ୍ତରାର୍ଦ୍ଧ

ନବମ ଶତକର ଉତ୍ତରାର୍ଦ୍ଧରେ ଭାରତୀୟ ଅଳଙ୍କାର ଶାସ୍ତ୍ରର ଇତିହାସରେ ଆନନ୍ଦବର୍ଦ୍ଧନ ଓ ଅଭିନବ ଗୁପ୍ତଙ୍କର

ଅଭ୍ୟୁଦୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆନନ୍ଦବର୍ଦ୍ଧନ ପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥ ଧ୍ୱନ୍ୟାଲୋକର 'ବୃତ୍ତି' ଲେଖକ ଏବଂ ଅଭିନବ ଗୁପ୍ତ 'ଧ୍ୱନ୍ୟାଲୋକ ବୃତ୍ତି'ର ବ୍ୟାଖ୍ୟାକାର । ଧ୍ୱନ୍ୟାଲୋକ ବୃତ୍ତିର ପ୍ରକୃତ ନାମ 'ଆଲୋକ' ଯାହାକି ଆନନ୍ଦବର୍ଦ୍ଧନଙ୍କର କୃତ ଏବଂ ବ୍ୟାଖ୍ୟାର ନାମ 'ଲୋଚନ' ଯାହାକି ଅଭିନବ ଗୁପ୍ତଙ୍କର ରଚନା । ତେବେ ଏମାନେ ପ୍ରଥମତଃ କବି; ପରେ ଆଳଙ୍କାରିକ । ସ୍ୱରଚିତ କବିତାର ଉଦାହରଣରେ ଏମାନଙ୍କର ଧ୍ୱନିମତ ମାନସ ପ୍ରତିଷ୍ଠିତ । 'ଧ୍ୱନିରାତ୍ମା କାବ୍ୟସ୍ୟ' ହିଁ ଏମାନଙ୍କର କାବ୍ୟିକ ଆଦର୍ଶ ।

## ରୁଦ୍ରଟ : କାବ୍ୟାଳଙ୍କାର ଶାସ୍ତ୍ର : ଦଶମ ଶତାବ୍ଦୀ

ଦଶମ ଶତାବ୍ଦୀର ଆଳଙ୍କାରିକ ରୁଦ୍ରଟ ଆନନ୍ଦବର୍ଦ୍ଧନଙ୍କର ସମସାମୟିକ । ଆନନ୍ଦବର୍ଦ୍ଧନଙ୍କର ଅବ୍ୟବହିତ କାଳରେ ରୁଦ୍ରଟଙ୍କର ଅଭ୍ୟୁଦୟ । ସେ କାଶ୍ମିରୀ—ତାଙ୍କର 'କାବ୍ୟାଳଙ୍କାର ଶାସ୍ତ୍ର' ଅତି ମୂଲ୍ୟବାନ । ଅଳଙ୍କାର ବିଚାରର କ୍ଷେତ୍ରରେ ରୁଦ୍ରଟଙ୍କର ମୌଳିକତା ସ୍ୱୀକୃତ । ରୁଦ୍ରଟ ରସବାଦୀ, ରୀତିବାଦୀ ପୁଣି ଅଳଙ୍କାର ବାଦୀ ପଣ୍ଡିତ । ଦଣ୍ଡୀଙ୍କର ବୈଦର୍ଭୀ ଓ ଗୌଡ଼ୀ; ବାମନଙ୍କର ପାଞ୍ଚାଳୀ ରୀତି ଭିନ୍ନ ରୁଦ୍ରଟ ଲାଟିୟା ନାମକ ଅନ୍ୟ ଏକ ରୀତିର ସ୍ରଷ୍ଟା । ତେଣୁ ସେ ପୂର୍ବସୂରୀମାନଙ୍କର ରୀତି ନିରୂପଣକୁ ଅସ୍ୱୀକାର କରି ନାହାନ୍ତି । ବରଂ ବୈଦର୍ଭୀକୁ ପ୍ରାଧାନ୍ୟ ଦେଇଛନ୍ତି । ରୁଦ୍ରଟଙ୍କର ରୀତି ନିର୍ଦ୍ଦେଶ ଗୁଣ ଭିତ୍ତିକ ନୁହେଁ, ସମାସ ଭିତ୍ତିକ । ଦୁଇ ତିନୋଟି ସମାସ ଥାଏ ପାଞ୍ଚାଳୀ ରୀତି, ପାଞ୍ଚ ସାତୋଟିରେ ଲାଟିୟା, ତଦୂର୍ଦ୍ଧ୍ୱ ସମାସରେ ଗୌଡ଼ୀରୀତିର ସୃଷ୍ଟି ହୋଇଥାଏ । କିନ୍ତୁ ସମାସ ହୀନତାରେ ବୈଦର୍ଭୀ; ତେଣୁ ତାହା

ଖୁବ ମୂଲ୍ୟବାନ । ରୁଦ୍ରଟ "କାବ୍ୟାଳଙ୍କାର" ନାମକ ଏକ ବୋଲଙ୍କାର ସ୍ରଷ୍ଟା । ରୁଦ୍ରଟଙ୍କର ମତରେ ଶ୍ଳେଷ ଅଳଙ୍କାର ; ଶବ୍ଦ ଶ୍ଳେଷ ଓ ଅର୍ଥଶ୍ଳେଷ ଆଦି ଦୁଇଭାଗରେ ବିଭକ୍ତ । ଶଂସ୍କୃତ ଆଲଙ୍କାରିକଙ୍କ ଦୃଷ୍ଟିରେ ଅଳଙ୍କାର ଚାରିଭାଗରେ ବିଭକ୍ତ— ବାସ୍ତବ, ଉପମା, ଅତିଶୟ ଓ ଅର୍ଥଶ୍ଳେଷ ।

ଆଲଙ୍କାରିକ ରୁଦ୍ରଟ ରସବାଦର ବିଶେଷ ସମର୍ଥକ । ବାକ ପ୍ରବାହର ସଙ୍ଗତି ଓ ସ୍ୱତଃ ସ୍ଫୂର୍ତ୍ତି ରସାତ୍ମକ କାବ୍ୟ ସୃଷ୍ଟିର ପରିପୂରକ ବୋଲି ରୁଦ୍ରଟଙ୍କର ମତ । 'ବୋଧଚୈ– କାର୍ଯ୍ୟମ୍"— ତାଙ୍କର କାବ୍ୟସଂଜ୍ଞା । ରୁଦ୍ରଟ ରସର ବିଶ୍ଳେଷଣ କରି ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦିଅନ୍ତି । ସଂଯୋଗ ଓ ବିପ୍ରଲମ୍ଭ ନାମରେ ଶୃଙ୍ଗାର ଦୁଇପ୍ରକାର ; ବିପ୍ରଲମ୍ଭ ଚାରିପ୍ରକାର, ଅନୁରାଗ, ମାନ, ପ୍ରବାସ, କରୁଣ । ଏତେଣୁ ରସ ବିଚାରରେ ତାଙ୍କର ଆଲଙ୍କାରିକ ମାନସ କେଉଁଠି ନାହିଁ ତାହା କହି ହେବନି ।

ଏହି ସମୟର ପରବର୍ତ୍ତୀରେ ପ୍ରାକୃତ ନାଟ୍ୟକାର ରାଜ– ଶେଖରଙ୍କର ଅଭ୍ୟୁଦୟ ହୁଏ । ଅଳଙ୍କାର ଜଗତରେ ସେ ଜଣେ ରସବାଦୀ ଓ ଧ୍ୱନିର ପନ୍ଥୀ ରୂପେ ଅନୁଭୂତ ହୋଇଥାନ୍ତି । ତାଙ୍କର ଅଳଙ୍କାର ଗ୍ରନ୍ଥ — 'କାବ୍ୟମୀମାଂସା" । ରାଜଶେଖର କଳ୍ପନା ବଳରେ କାବ୍ୟର ନୂତନ ସଂଜ୍ଞା ଓ ସ୍ୱରୂପ କାବ୍ୟାଳ ଭଙ୍ଗୀରେ ପ୍ରକାଶ କରିଛନ୍ତି । ତାଙ୍କ ମତରେ, କାବ୍ୟ ପୁରୁଷହିଁ ସରସ୍ୱତୀ ତନୟ ; ସାହିତ୍ୟ ବିଦ୍ୟା ତାର ବଧୂ, ଶବ୍ଦାର୍ଥ କାବ୍ୟ ପୁରୁଷର ଶରୀର, ସଂସ୍କୃତ ମୁଖ, ପ୍ରାକୃତ ବାହୁ, ସମତା-ପ୍ରସାଦ-ମାଧୁର୍ଯ୍ୟ ଆଦି ତାର ଗୁଣ ; ରସଆତ୍ମା ଏବଂ ଉପମା— ଅନୁପ୍ରାସ ଆଦି ତାର ଅଳଙ୍କାର ।,ଗୁଣବତ୍ ଅଲଂକୃତଂ ବାକ୍ୟଂ କାବ୍ୟମ୍—ହିଁ ରାଜ– ଶେଖରଙ୍କର କାବ୍ୟସଂଜ୍ଞା ।

କୁନ୍ତକ, ଏହି ଶତକର ଅନ୍ୟତମ ଆଳଙ୍କାରିକ । ସେ "ବକ୍ରୋକ୍ତି କାବ୍ୟ ଜୀବିତମ୍" ଗ୍ରନ୍ଥର ରଚୟିତା ଏବଂ ତାହାଙ୍କ ପ୍ରାଣଙ୍କର କାବ୍ୟତତ୍ତ୍ୱ । କୁନ୍ତକ, ଧ୍ୱନିର ଏକ ନୂତନ ବ୍ୟାଖ୍ୟାକାର । ଧ୍ୱନି ସ୍ୱଭାବରୁ ସ୍ୱତର ଜନ୍ମ ବୋଲି ତାଙ୍କର ବଳିଷ୍ଠ ମତ ।

## ଔଚିତ୍ୟ ବାଦୀ ଆଳଙ୍କାରିକ ଓ ଏକାଦଶ ଶତାବ୍ଦୀ

ଏକାଦଶ ଶତକ ଔଚିତ୍ୟବାଦୀ ଆଳଙ୍କାରିକ ମାନଙ୍କର ଉପସ୍ଥିତିରେ ବିଶେଷ ଗୁରୁତ୍ୱପୂର୍ଣ୍ଣ । କ୍ଷେମେନ୍ଦ୍ରଙ୍କ "କବି କଣ୍ଠାଭରଣ" ଓ "ଔଚିତ୍ୟ ବିଚାର ଚର୍ଚ୍ଚା" ଗ୍ରନ୍ଥରୁ ଔଚିତ୍ୟହିଁ କାବ୍ୟର ଆତ୍ମା ବୋଲି ପ୍ରତୀତ ହୁଏ । ପଦ, ବାକ୍ୟ, ଅଳଙ୍କାର, ରସ- ସବୁ ଏହି ଔଚିତ୍ୟର ମାନଦଣ୍ଡରେ ବିଚାର୍ଯ୍ୟ । ଯେଉଁ ରସ ଆଦି କାବ୍ୟବସ୍ତୁ ଭବ ବକ୍ତବ୍ୟର ଅନୁକୂଳ, ଅନୁଗତ ଓ ସମୁଚିତ ମନୋଭଙ୍ଗୀ ନେଇ ପ୍ରଯୁକ୍ତ ହୋଇଥିବ ତାହା ନେଇଥିଲେ ତାହାହିଁ ହେବ କାବ୍ୟ । ତେଣୁ ତାଙ୍କ ମତରେ ଔଚିତ୍ୟହିଁ କାବ୍ୟର ଆତ୍ମା—

"ଔଚିତ୍ୟଂ ରସ ସିଦ୍ଧସ୍ୟ ସ୍ଥିରଂ କାବ୍ୟସ୍ୟ ଜୀବିତମ୍" ।

ଏକାଦଶ ଶତକ ଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ହେମଚନ୍ଦ୍ର, ବାଗଭଟ୍ଟ, ଜୟଦେବ ଆଦି ବିଭିନ୍ନ ଆଳଙ୍କାରିକଙ୍କର ଅଭ୍ୟୁଦୟ ହୋଇଛି । ନୂତନ ସଂଯୋଜନାର ସୂଚନା ନାହିଁ— କିନ୍ତୁ ସେଇ ପୂର୍ବ ପ୍ରତିଷ୍ଠିତ ମତବାଦର ଆଲୋଚନା ବିବେଚନାରେ ଏଇ ସମୟଟି ସମୃଦ୍ଧ । ଖ୍ରୀ. ତାଳିକା ଭିତ୍ତିରେ ସମସ୍ତ ବିଷୟ ବସ୍ତୁର ଅପରାପର ଗୁଣ ବିଚାର କରାଯାଇଛି ।

## ବିଶ୍ୱନାଥ କବିରାଜ :-- ୧୪ଶ ଶତକ

ବାକ୍ୟଂ ରସାତ୍ମକଂ କାବ୍ୟଂ— ବିଶ୍ୱନାଥ କବିରାଜଙ୍କର କାବ୍ୟସଂଜ୍ଞା, ସେଇ ଉତ୍କଳୀୟ ଆଳଙ୍କାରିକଙ୍କର "ସାହିତ୍ୟ ଦର୍ପଣ" ଅତି ମୂଲ୍ୟବାନ । ଆଳଙ୍କାରିକ ସ୍ପଷ୍ଟ ରସବାଦୀ । ତାଙ୍କ ମତରେ ରସସିକ୍ତ ବାକ୍ୟହିଁ କାବ୍ୟ ପଦବାଚ୍ୟ ; ଦୋଷ କାବ୍ୟର ହତ କାରକ ; ଗୁଣ ରୀତି ଓ ଅଳଙ୍କାର କାବ୍ୟର ଉତ୍କର୍ଷ ପ୍ରତିପାଦକ । ଧ୍ୱନି ଅନୁରଣିତ କାବ୍ୟ ହୁଏତ ଉତ୍ତମ କାବ୍ୟ, କିନ୍ତୁ ତାଙ୍କ ମତରେ ଧ୍ୱନି କାବ୍ୟର ଆତ୍ମା ନୁହେଁ । ଅଳଙ୍କାର କାବ୍ୟର ଶୋଭାକାରକ ଧର୍ମ ; ରସ ଶବ୍ଦାର୍ଥମୂର୍ତ୍ତିର ମହାପ୍ରାଣ । ଲଳନା ଶରୀରରେ ଭୂଷଣ ଯେପରି ଅସ୍ଥିର, କାବ୍ୟର ଅଳଂକାର ସେହିପରି । ଆଳଂକାରିକ ବିଶ୍ୱନାଥ କବିରାଜ ବହୁ ଦୃଷ୍ଟିରୁ ଜଣେ ସ୍ୱୟଂ ପ୍ରତିଷ୍ଠିତ ଆଳଂକାରିକ ।

## ପଣ୍ଡିତ ଜଗନ୍ନାଥ ରସଗଙ୍ଗାଧର : ୧୬ଶ–୧୭ଶ ଶତକ

ସମ୍ରାଟ ଶାହଜାହାଁଙ୍କ ପୁତ୍ର ଦାରାଙ୍କର ସଭାସଦର ପଣ୍ଡିତ ଥିଲେ— ଜୀବନର ଯୌବନାବସ୍ଥା ସେ ଏହି ଦିଲ୍ଲୀରେ ବିତେଇ ଥିଲେ । 'ଦିଲ୍ଲୀ ବଲ୍ଲଭ ପାଣି ପଲ୍ଲବ ତଳେ ନୀତଂ ନବୀନଂ ବୟଃ' ବୋଲି ସେ ତାଙ୍କର 'ଭାମିନୀ ବିଳାସ' କାବ୍ୟରେ ଉଲ୍ଲେଖ କରିଥିଲେ । ଦାରାଙ୍କର ମୃତ୍ୟୁକାଳ ୧୬୫୯ । ସୁତରାଂ ପଣ୍ଡିତରାଜ ସପ୍ତଦଶ ଶତକର ଆଳଂକାରିକ । 'ରସ ଗଙ୍ଗାଧର' ତାଙ୍କର ଶ୍ରେଷ୍ଠ ଅଳଙ୍କାର ଗ୍ରନ୍ଥ । ଆଳଙ୍କାରିକଙ୍କର କାବ୍ୟ ସଂଜ୍ଞା "ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍"— ଏହି ସଂଜ୍ଞାରୁ ମନେହୁଏ, ଯାହା ବସ୍ତୁତଃ ସହୃଦୟ ପାଠକର ହୃଦୟ ବୃତ୍ତିକୁ

ପୂର୍ଣ୍ଣ କରେ ; ଅର୍ଥବୋଧରେ ଚମତ୍କାରିତା ସୃଷ୍ଟି କରିପାରେ ; ପ୍ରତିପାଦନରେ ସକଳ ସୌକୁମାର୍ଯ୍ୟ ରକ୍ଷା କରିପାରେ ତାହାହିଁ 'ଅର୍ଥତଃ କାବ୍ୟର ମର୍ଯ୍ୟାଦା ଲାଭ କରିପାରେ । କାବ୍ୟ ଜନନୀ ମୁଖରୁ ଏହି ସତ୍ୟ ଯେପରି ପଣ୍ଡିତ ଜଗନ୍ନାଥ ପ୍ରକାଶିତ— କବି ଯଥାର୍ଥତଃ ଏହି ରସବାଦ, ଧ୍ୱନିବାଦ, ବକ୍ରୋକ୍ତିବାଦ, ଅଳଙ୍କାର-ବାଦ ଇତ୍ୟାଦି ସମସ୍ତଙ୍କର ଏକ ସୌଷ୍ଠବ ସ୍ୱୀକୃତି ପ୍ରଦାନ କରି ପାରିଛନ୍ତି । ଭାରତୀୟ ଅଳଙ୍କାର ଶାସ୍ତ୍ର ଏବଂ ତତ୍ ସହିତ ନୂତନ ଆତ୍ମମୁଖୀ ଓ ବୈଜ୍ଞାନିକ ବିଶ୍ଳେଷଣରେ କାବ୍ୟାଳଙ୍କାର ଶାସ୍ତ୍ରକୁ ଆଧୁନିକ ଗୌରବ ପ୍ରଦାନ କରିଛନ୍ତି ପଣ୍ଡିତ ଜଗନ୍ନାଥ ।

ସୁତରାଂ ଭାରତୀୟ କାବ୍ୟଶାସ୍ତ୍ର- ସମୀକ୍ଷା ଐତିହାସିକ ପଦ୍ଧତିରେ ବିଭିନ୍ନ ସମ୍ପ୍ରଦାୟ କରି କ୍ରମେ କ୍ରମେ ନିତ୍ୟନୂତନ ଗୁଣ ବିଭୂଷିତ ହୋଇ ଉଦ୍‌ଭାସିତ ହୋଇଛି ଏବଂ କାବ୍ୟକଳାକୁ ନିର୍ଦ୍ଦେଶ ଦେଇଛି, ନିୟନ୍ତ୍ରିତ କରିଛି— ଶୃଙ୍ଖଳିତ କରିଛି ।




ମୁଦ୍ରାକର— ଶ୍ରୀ ବିଶ୍ୱନାଥ ଆଚାର୍ଯ୍ୟ, ଭାରତୀ ପ୍ରେସ, ହିଞ୍ଜିଳିକାଟୁ—୧୯୬୯

# ସହାୟକ ଗ୍ରନ୍ଥ ସୂଚୀ

**ଓଡ଼ିଆ :—**

(୧) ଅଳଙ୍କାର ସାହିତ୍ୟର କ୍ରମ ବିକାଶ—
ଶ୍ରୀ ଗୌରୀକୁମାର ବ୍ରହ୍ମା

(୨) ଅଳଙ୍କାର ତରଙ୍ଗିଣୀ— ଶ୍ରୀ କୁଳମଣି ଦାଶ

(୩) ଅଳଙ୍କାର ଶାସ୍ତ୍ର ପ୍ରବେଶ— ଶ୍ରୀ ଅଭିନ୍ନଚନ୍ଦ୍ର ଦାଶ

(୪) ଓଡ଼ିଆ ସାହିତ୍ୟ ପ୍ରକାଶ
ପଣ୍ଡିତ ଶ୍ରୀ ବିନାୟକ ମିଶ୍ର

**ବଙ୍ଗଳା :—**

(୧) ଅଳଙ୍କାର ଚନ୍ଦ୍ରିକା— ଶ୍ରୀ ଶ୍ୟାମାପଦ ଚକ୍ରବର୍ତ୍ତୀ ।

**ହିନ୍ଦୀ :—**

(୧) କାବ୍ୟ ଦର୍ପଣ—
ବିଦ୍ୟା ବାଚସ୍ପତି ଶ୍ରୀ ରାମଦହିନ ମିଶ୍ର

(୨) କାବ୍ୟଶାସ୍ତ୍ର— ଶ୍ରୀ ଦେବନାଥ ପାଣ୍ଡେ ।